# ମନ୍ଦିର କାହାଣୀ

[କମ୍ବଦନ୍ତୀ ମୂଳକ]

ଲେଖକଗଣ
ଶ୍ରୀ ମହେଶ୍ଚନ୍ଦ୍ର ପଟ୍ଟନାୟକ, ପ୍ରଧାନ ଶିକ୍ଷକ,
ଶ୍ରୀ ଭଗବାନ ନାୟକ, ସହକାରୀ ଶିକ୍ଷକ,
ନୂଆବଜାର ମ: ଇ: ବିଦ୍ୟାଳୟ, କଟକ
ଶ୍ରୀ ଦ୍ୱାରକାନାଥ ମହାପାତ୍ର

ଅଭିନବ ସଂସ୍କରଣ
୧୯୬୨

ପ୍ରକାଶକ:-
ମହାପାତ୍ର ବ୍ରଦର୍ସ
ବାଲୁବଜାର କଟକ-୨

ମୂଲ୍ୟ—ଟ୧-୨୦ ନୂ: ପ:

# ସୂଚିପତ୍ର

# ଶ୍ରୀମନ୍ଦିର

## ନୀଳମାଧବ (୧)

ମହାପ୍ରଭୁ ଶ୍ରୀକୃଷ୍ଣ ଜରା ଶବରର ଶରରେ ପ୍ରାଣ ତ୍ୟାଗ କରିବାରୁ ଅର୍ଜୁନ ପ୍ରଭୃତି ତାଙ୍କର ଦେହକୁ ନିଆଁରେ ପୋଡ଼ିବାକୁ ବସିଲେ । ମାତ୍ର କାଠ ଜାଳି ଜାଳି ସେମାନେ ଥକିପଡ଼ିଲେ, ତଥାପି ସେ ଦେହରେ ନିଆଁ ଲାଗିଲା ନାହିଁ । ତହୁଁ ସେମାନେ ବଡ଼ ହତାଶ ହୋଇପଡ଼ିଲେ । ଏତିକିବେଳେ ଶୂନ୍ୟବାଣୀ ଶୁଣାଗଲା, "ଅର୍ଜୁନ ! ତୁମେ ଆଉ ବୃଥା ଚେଷ୍ଟା କର ନାହିଁ । ମୋ ଦେହ ନିଆଁରେ ପୋଡ଼ି ହେବ ନାହିଁ । ତୁମେ ତାକୁ ସମୁଦ୍ରରେ ପକାଇ ଦିଅ ।" ଏହା ଶୁଣିପାରି ଅର୍ଜୁନ ପ୍ରଭୃତି ଶ୍ରୀକୃଷ୍ଣଙ୍କର ଦେହକୁ ନେଇ ସମୁଦ୍ରରେ ପକାଇଦେଲେ ଏବଂ ଘରକୁ ମନଦୁଃଖରେ ଫେରିଗଲେ ।

ଜରା ତ ଜଣେ ବଡ଼ ଭକ୍ତ । ସେ କିନ୍ତୁ ଘରକୁ ଫେରିଲା ନାହିଁ । ସମୁଦ୍ର କୂଳେ କୂଳେ ସେ ସେହି ଦେହକୁ ଜଗି ବୁଲୁଥାଏ ଏବଂ ମନେ ମନେ ଧ୍ୟାନ କରି କହୁଥାଏ, "ପ୍ରଭୁ ! ମୋତେ ଦୟାକର । ମୁଁ ତୁମକୁ ମୋ କୁଡ଼ିଆରେ ପୂଜା କରିବାର ସୌଭାଗ୍ୟ ପାଏଁ ।"

ଏହିପରି କେତେଦିନ ଗଲା, ମାତ୍ର ଜରା ସେହିପରି ବୁଲୁଥାଏ । ଦିନେ ସେ ହଠାତ୍ ଶୁଣି ପାରିଲା, "ଜରା ! ତୁ କାହିଁକି ଏତେ କଷ୍ଟ ହେଉଛୁ ? ତୋ କୁଡ଼ିଆକୁ ଫେରିଯାଅ । ମୁଁ ସେଠାରେ ତୋତେ ଦେଖାଦେବ ଏବଂ ତୋର ପୂଜା ଗ୍ରହଣ କରିବ ।"

ଏହା ଶୁଣି ଜରା ଶାନ୍ତରେ ଫେରିଆସିଲା । ନିଜ କୁଡ଼ିଆରେ ମହାପ୍ରଭୁଙ୍କୁ ପାଇ ଗୋଟିଏ ଗୁମ୍ଫାରେ ଲୁଚାଇ ରଖିଲା ଏବଂ ଭକ୍ତି ସହକାରେ ପୂଜା କଲା । ସେହି ଦିନଠାରୁ ଜରାର ବଂଶଧରମାନେ ମହାପ୍ରଭୁଙ୍କୁ ସେହି ଗୁମ୍ଫାରେ ପୂଜା କରି ଆସୁଥିଲେ ।

ବିଶ୍ୱାବସୁଙ୍କର ଜନ୍ମ ସେହି ବଂଶରେ । ସେ ମଧ୍ୟ ନିଜର ବାପ ଅଜାଙ୍କ ପରି ମହାପ୍ରଭୁଙ୍କୁ ଭକ୍ତି ସହକାରେ ପୂଜା କରୁଥାନ୍ତି । ବଣରୁ ପାଚିଲା ଫଳସବୁ ତୋଳି ଆଣନ୍ତି । ପ୍ରଥମେ ସେଗୁଡ଼ିକ ମିଠା କି ପିତା, ଜାଣିବା ପାଇଁ ନିଜେ ଚାଖନ୍ତି । ଯେଉଁ ଫଳଗୁଡ଼ିକ ମିଠା ଲାଗେ, ସେଗୁଡ଼ିକୁ ସେ ଠାକୁରଙ୍କ ପାଖରେ ଭୋଗ ଲଗାନ୍ତି । ଠାକୁର ତ ତାଙ୍କର ସରଳ ଭକ୍ତିରେ ଭୋଳ ! ଏଣୁ ଭକ୍ତର ଅଇଁଠା ବୋଲି ଘୃଣା ନ କରି ଆନନ୍ଦରେ ତାହା ଗ୍ରହଣ କରନ୍ତି ।

ବିଶ୍ୱ ବସୁ ଠାକୁରଙ୍କୁ 'ନୀଳମାଧବ' ବୋଲି ଡାକୁଥିଲେ । ଅନ୍ୟ କେହି ଜାଣିପାରିଲେ କାଳେ ଠାକୁରଙ୍କୁ ନେଇଯିବ, ଏଥିପାଇଁ ସେ ସେକଥା କାହାକୁ କହନ୍ତି ନାହିଁ, କିମ୍ବା ଠାକୁରଙ୍କୁ କାହାରିକି ଦେଖାନ୍ତି ନାହିଁ । ଲୁଚି ଲୁଚି ପ୍ରତିଦିନ ରାତିରେ ଯାଇ ପୂଜା କରି ଚାଲିଆସନ୍ତି । ଶ୍ରୀକୃଷ୍ଣଙ୍କର ତ ବୃନ୍ଦାବନରେ ବୁଲିବା ଏବଂ ବଣରେ ଫୁଲ ଫଳ ପାଇବାରେ ଭାରି ଶ୍ରଦ୍ଧା ! ତେଣୁ ସେ ଗୁମ୍ଫା ଭିତରେ ରହି ବଣର ଫଳ ଖାଇ ମଉଜରେ ଥାଆନ୍ତି ।

ବିଶ୍ୱାବସୁଙ୍କର ଘର ଆମର ଓଡ଼ିଶା ଗଡ଼ଜାତର ବଣ ଭିତରେ । ସେ ଶବରମାନଙ୍କ ମଧ୍ୟରେ ରାଜା ଥିଲେ । ତାଙ୍କର ପୁଅ ନ ଥାଏ । ଗୋଟିଏ ମାତ୍ର ଝିଅ, ନାଁ ତାର ଲଳିତା । ସେ ଯେଉଁ ଗୁମ୍ଫାରେ ନୀଳମାଧବଙ୍କୁ ଲୁଚାଇ ରଖିଥିଲେ, ତାହାର ନାମ ବାଘଗୁମ୍ଫା ତାହା ମହାନଦୀ କୂଳର 'କଣ୍ଟିଲୋ' ନିକଟରେ ଅବସ୍ଥିତ ।

ସେତେବେଳେ ମାଳବରେ 'ଇନ୍ଦ୍ରଦ୍ୟୁମ୍ନ' ବୋଲି ଜଣେ ରାଜା ଥାନ୍ତି । ତାଙ୍କ ରାଣୀଙ୍କର ନାମ 'ଗୁଣ୍ଡିଚା' । ରାଜା ଓ ରାଣୀ ଦୁହେଁଯାକ

ଠାକୁରଙ୍କର ଘୋର ଭକ୍ତ । ସବୁବେଳେ ଠାକୁରଙ୍କ ନାମ ଭଜନ-କୀର୍ତ୍ତନ କରି ଭକ୍ତିରେ ପାଗଳ ପରି ହେଉଥାନ୍ତି । ରାଣୀ ଗୁଣ୍ଡିଚା ମନେ ମନେ ଠାକୁରଙ୍କୁ ଧ୍ୟାନ କରି କହନ୍ତି, "ହେ ପ୍ରଭୁ ! କେଉଁଠି ଅଛ, ଆମକୁ ଦେଖା ଦିଅ । ଆମେ ତୁମର ଚରଣସେବା କରିବୁଁ । ଆମର ପୁଅ ନାହିଁ । ତୁମେହିଁ ଆମର ପୁଅ ।" ଏହିପରି ଅତି ବ୍ୟାକୁଳ ହୋଇ ରାଣୀ ସବୁବେଳେ ଧ୍ୟାନ କରିବାରୁ ଠାକୁର ଆଉ ଅଥୟ ହୋଇ ରହି ପାରିଲେ ନାହିଁ । ଦିନେ ସେ ରାଣୀଙ୍କୁ ସ୍ୱପ୍ନରେ କହିଲେ, "ମା ! ତୁମେ ତ ଆରଜନ୍ମରେ ଯଶୋଦା ଥିଲ ଏବଂ ତୁମର ସ୍ୱାମୀ ମଧ୍ୟ ନନ୍ଦ ଥିଲେ, ଏଣୁ ମୁଁ ତୁମ ଦୁହିଁଙ୍କର ଆଗରୁ ପୁଅ । ମୁଁ ତୁମ ପାଖକୁ ନ ଯାଇ ରହିବି କିପରି ? ତୁମେ ଆଉ ବ୍ୟସ୍ତ ହୁଅ ନାହିଁ । ମୁଁ ଓଡ଼ିଶାର ଗୋଟିଏ ଗୁମ୍ଫାରେ 'ନୀଳମାଧବ' ନାମରେ ପୂଜା ପାଉଛି । ମୋତେ ସେଠାରୁ ଆଣିଲେ ମୁଁ ଆସିବି ।"

ରାଣୀଙ୍କର ନିଦ ଭାଙ୍ଗିଗଲା । ସେ ହଠାତ୍ ଉଠିପଡ଼ି ରାଜାଙ୍କୁ ଉଠାଇ ସ୍ୱପ୍ନ କଥା ସବୁ କହିଲେ । ରାତି ପାହିବା ପର୍ଯ୍ୟନ୍ତ ମନ ସମ୍ଭାଳ ହୋଇ ନ ଥାଏ । ସେହିପରି ବିଛଣାରେ ପଡ଼ିରହି ସ୍ୱପ୍ନରେ ଦେଖିଥିବା ନୀଳମାଧବଙ୍କ ରୂପ ରାଜାଙ୍କ ଆଗରେ କହୁଥାନ୍ତି । ରାତି ପାହିଗଲା । ରାଜା ନିତ୍ୟକର୍ମ ସାରି ଦରବାରକୁ ବିଜେହେଲେ ଏବଂ ନିଜର ସେନାପତି 'ବିଦ୍ୟାପତି'ଙ୍କୁ ଆଦେଶ ଦେଲେ, "ଯେତେଶୀଘ୍ର ସମ୍ଭବ ଓଡ଼ିଶାର ଗଡ଼ଜାତ ଗୁମ୍ଫାରୁ ପ୍ରଭୁ ନୀଳମାଧବଙ୍କର ସନ୍ଧାନ ଅବଶ୍ୟ ଆଣିବାକୁ ହେବ ।"

ଏହି ଆଦେଶ ପାଇ ବିଦ୍ୟାପତି ଓଡ଼ିଶାକୁ ବାହାରି ଆସିଲେ । ସେ ଓଡ଼ିଶାରେ ଅଧିକାଂଶ ଗଡ଼ଜାତ ଅଞ୍ଚଳର ଜଙ୍ଗଲ ଓ ଗୁମ୍ଫା ବୁଲି ବୁଲି ଥକି ପଡ଼ିଲେ, ମାତ୍ର କୌଣସି ସନ୍ଧାନ ପାଇଲେ ନାହିଁ । ଶେଷରେ ବିଶ୍ୱାବସୁ ଯେଉଁ ବଣରେ ଥାନ୍ତି, ସେହି ବଣରେ ଆସି ପହଞ୍ଚିଲେ । ବିଶ୍ୱାବସୁଙ୍କର ଝିଅ ଲଳିତା ନିଜ ସଖୀମାନଙ୍କ

ସଙ୍ଗରେ ବଣରେ ନାଚି ବୁଲି ଖେଳୁଥାଏ, ଗୀତ ବୋଲୁଥାଏ ଏବଂ ଫୁଲ ତୋଳୁଥାଏ । ଏହିପରି ଭାବରେ ପାହାଡ଼ର ଉଚ୍ଚ ଖାଲ ସ୍ଥାନରେ ଧାଁ ଦଉଡ଼ କରୁ କରୁ ଆକସ୍ମିକ ଭାବରେ ତାହାର ଗୋଡ଼ ଖସିଗଲା ଏବଂ ସେ ଗଡ଼ିଯାଇ ଚେତନା ହରାଇଲା । ବିଦ୍ୟାପତି ଦୂରରୁ ଏହା ଦେଖିପାରିଲେ । ସେ ଦଉଡ଼ି ଆସି ଲଳିତାକୁ ଉଠାଇ ଚେତା କରାଇଲେ ।

ସେତେବେଳେ ଲଳିତାର ସଖୀମାନେ ଟିକିଏ ଦୂରରେ ଥିଲେ । ସେମାନେ ଏ ଘଟଣା ଦେଖିଲେ ଓ ଦୌଡ଼ିଯାଇ ରାଜା ବିଶ୍ୱାବସୁଙ୍କୁ କହିଦେଲେ । ସଙ୍ଗେ ସଙ୍ଗେ ଦଳେ ଶବର ଧନୁଶର ଧରି ଧାଇଁ ଆସିଲେ ଏବଂ ବିଦ୍ୟାପତିଙ୍କୁ ବାନ୍ଧିନେଇ ବିଶ୍ୱାବସୁଙ୍କ ପାଖରେ ପହଞ୍ଚାଇ ଦେଲେ । ବିଶ୍ୱାବସୁ ତାଙ୍କର ପରିଚୟ ପାଇ ତାଙ୍କୁ କହିଲେ, "ଆମ ଜାତିର ନିୟମ ଏହି ଯେ, ଯଦି କେହି କୌଣସି ଯୁବତୀ ଝିଅକୁ ଛୁଇଁଦିଏ, ତେବେ ସେ ତାକୁ ବିବାହ କରିବାକୁ ବାଧ୍ୟ । ତୁମକୁ ମୋର କନ୍ୟାକୁ ବିବାହ କରିବାକୁ ହେବ । ତାହା ନ ହେଲେ ତୁମର ମୁଣ୍ଡକାଟ ହେବ । ତୁମେ କେଉଁଥିରେ ରାଜି, ଶୀଘ୍ର ପ୍ରକାଶ କର ।"

ଏପରି କଥା ଶୁଣି ବିଦ୍ୟାପତି ବିସ୍ମିତ ହେଲେ । ପୂର୍ବରୁ ସେ ଟିକିଏ ସୂଚନା ପାଇଥିଲେ ଯେ, ବିଶ୍ୱାବସୁ ନୀଳମାଧବଙ୍କୁ ପୂଜା କରନ୍ତି । ଏଣୁ ସେ ସ୍ଥିର କଲେ, ମୋର ଜାତି ବରଂ ଯାଉ, ମୁଁ ଯଦି ବିବାହ ପ୍ରସ୍ତାବରେ ରାଜି ହୋଇଯାଏ, ତେବେ ନିଶ୍ଚୟ ମହାପ୍ରଭୁଙ୍କ ସନ୍ଧାନ ପାଇବି । ତଥାପି ଛଳନା କରି କହିଲେ, "ମୁଁ ବ୍ରାହ୍ମଣ । ଶବର ଝିଅକୁ ବିବାହ କରିବା ମୋ ପକ୍ଷେ ସମ୍ଭବ ହେବ ନାହିଁ ।"

ବିଦ୍ୟାପତିଙ୍କ ଉତ୍ତର ଶୁଣି ଶବରରାଜା କହିଲେ, "ତେବେ ମୁଣ୍ଡ ଦେବାକୁ ପ୍ରସ୍ତୁତ ହୁଅ । ଆଉ କିଛି କହିବାକୁ ଅଛି କି ?"

ବିଦ୍ୟାପତି ଏଥର କହିଲେ, "ବରଂ ବିବାହ କରି ବଞ୍ଚି ରହିବି, ପ୍ରାଣ ହରାଇବି କାହିଁକି ?"

ଏହି ଉତ୍ତର ପାଇ ଶବରରାଜା ଖୁସିହେଲେ ଏବଂ ସଙ୍ଗେ ସଙ୍ଗେ ବିବାହର ଆୟୋଜନ କଲେ । ବିବାହ ସରିବା ପରେ ଦିନେ ବିଦ୍ୟାପତି ଲଳିତାକୁ ନୀଳମାଧବଙ୍କ ବିଷୟ ପଚାରିଲେ । ଲଳିତା କହିଲା, "ବାପା ତାଙ୍କୁ କେଉଁଠି ଲୁଚାଇ ରଖିଛନ୍ତି । ପ୍ରତିଦିନ ରାତିରେ ଯାଇ ପୂଜା କରି ଆସନ୍ତି । ମୁଁ ମଧ୍ୟ ସେ ଠାକୁରଙ୍କୁ ଦେଖି ନାହିଁ । ବାପାଙ୍କୁ କହିଲେ ସେ ତୁମକୁ ଦେଖାଇଦେବେ ।"

ଏହାପରେ ଲଳିତାର ଅନୁରୋଧରେ ବିଶ୍ୱାବସୁ ବିଦ୍ୟାପତିଙ୍କୁ ଠାକୁର ଦେଖାଇବାକୁ ରାଜିହେଲେ । ଦିନେ ରାତି ପାହାନ୍ତାରୁ ବିଦ୍ୟାପତିଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି ବିଶ୍ୱାବସୁ ତାଙ୍କୁ ସଙ୍ଗରେ ନେଇ ବାଘଗୁମ୍ଫାରେ ପହଞ୍ଚିଲେ ଏବଂ ସେଠାରେ ତାଙ୍କର ଅନ୍ଧ-ପୁଟୁଳି ଖୋଲିଦେଲେ । ପୂଜା ସରିବା ପରେ ପୁଣି ଅନ୍ଧପୁଟୁଳି ବାନ୍ଧି ତାଙ୍କୁ ଘରକୁ ଫେରାଇ ଆଣିଲେ । ଠାକୁରଙ୍କ ବିଷୟ କାହାରିକୁ ନ କହିବା ପାଇଁ ତାଙ୍କୁ ଆଗରୁ ସାବଧାନ କରାଯାଇଥାଏ ।

ବାଟ ଚିହ୍ନି ନ ପାରିବା ପାଇଁ ତ ବିଶ୍ୱାବସୁ ଅନ୍ଧପୁଟୁଳି ବାନ୍ଧିଥିଲେ; କିନ୍ତୁ ବିଦ୍ୟାପତି ଭାରି ଚତୁର । ଯିବା ପୂର୍ବରୁ ସେ ଅଣ୍ଟିରେ ମୁଠିଏ ସୋରିଷ ରଖିଥିଲେ । ଗୁମ୍ଫାକୁ ଯିବାବେଳେ ସେହି ସୋରିଷ ବୁଣିହୋଇ ଯାଇଥାଏ । ପରଦିନ ବିଦ୍ୟାପତି ତାହାକୁ ଲକ୍ଷ୍ୟ କରି କରି ବାଟ ଚିହ୍ନିଗଲେ ଏବଂ ଗୁମ୍ଫାରେ ଠାକୁରଙ୍କୁ ଆଉଥରେ ଦେଖି ଆସିଲେ । ଏହାପରେ ମନ ତାଙ୍କର ଚଞ୍ଚଳ ହୋଇଉଠିଲା । ସବୁବେଳେ ଭାବିଲେ, କିପରି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଏ ଖବର ଦେବେ । ସେଥିପାଇଁ ହଠାତ୍ ଦିନେ ଲୁଚି ଲୁଚି ସେ ମାଳବକୁ ପଳାଇଗଲେ ।

ମାଳବରୁ କଛୁ ସୈନ୍ୟସାମନ୍ତ ସହିତ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସଙ୍ଗରେ ନେଇ ବିଦ୍ୟାପତି ଆସି ବାଘ ଗୁମ୍ଫାରେ ପହଞ୍ଚିଲେ ।



ବିଶ୍ୱାବସୁ ମଧ୍ୟ ଏ ଖବର ପାଇପାରି ଆସି ସେଠାରେ ହାଜର ହୋଇଗଲେ । ମାତ୍ର ସେତେବେଳକୁ ଠାକୁର ଆଉ ଗୁମ୍ଫାରେ ନ ଥିଲେ । ସେ ଉଭାଇ ଯାଇଥିଲେ । ଗୁମ୍ଫା ଖାଲି ପଡ଼ିଥାଏ । ସମସ୍ତେ ମନଦୁଃଖରେ ଫେରିଗଲେ ।

ବିଶ୍ୱାବସୁ ଘରକୁ ଆସି କାନ୍ଦି କାନ୍ଦି ଗଡ଼ିଲେ । ଠାକୁର ତାଙ୍କୁ ସ୍ୱପ୍ନରେ କହିଲେ, "ତୁମେ ଦୁଃଖ କର ନାହିଁ । ମୁଁ ବାଙ୍କି ମୁହାଣରେ ଦାରୁବ୍ରହ୍ମ ରୂପରେ ଲାଗିବ । ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ତୁମେ ଯାଇ ମୋତେ ସେଠାରୁ ଆଣ ଏବଂ ସେଥିରେ ମୂର୍ତ୍ତି ଗଢ଼ାଇ ନୀଳାଚଳ ଧାମରେ ସମସ୍ତେ ମିଶି ପୂଜାକର ।"

## ଅନନ୍ତ ମହାରଣା ଓ ତିନମୂର୍ତ୍ତି (୨)

ମାଳବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଦିନେ ଠାକୁର ସ୍ୱପ୍ନରେ କହିଲେ, "ମୁଁ ନୀଳାଚଳରେ ରହିବାକୁ ଚାହେଁ । ଓଡ଼ିଶାର ଗଜପତି ରାଜା ଓ ବିଶ୍ୱାବସୁ—ଦୁହେଁଯାକ ମୋର ବଡ଼ ଭକ୍ତ । ସେମାନଙ୍କ ମନରେ କଷ୍ଟ ଦେବା ମୋର ଇଚ୍ଛା ନୁହେଁ । ଏଣୁ ତୁମେ ସେମାନଙ୍କ ସହିତ ମିଶି ସେଠାରେ ମୋତେ ପୂଜାକର । କାଲି ସକାଳେ ସମୁଦ୍ରର ବାଙ୍କିମୁହାଣରେ ଦାରୁ ରୂପରେ ମୁଁ ଆସି ଲାଗିବି । ତୁମେ ସେଥିରେ ମୂର୍ତ୍ତି ତିଆରି କରାଇ ପୂଜାକରିବ ।"

ଏହି ଆଦେଶ ପାଇ ରାଜା ଇନ୍ଦ୍ରଦ୍ୟୁମ୍ନ, ଗଜପତି ରାଜା ଓ ବିଶ୍ୱାବସୁଙ୍କୁ ସଙ୍ଗରେ ନେଇ ବାଙ୍କିମୁହାଣକୁ ଗଲେ ଏବଂ ସେଠାରୁ



ଦାରୁ ବା କାଠଗଣ୍ଡିଟିକୁ ନୀଳାଚଳକୁ ଅଣାଇଲେ । ସେହି ନୀଳାଚଳ ହେଉଛି ଆମର ପୁରୀ ସହର । ଇନ୍ଦ୍ରଦ୍ୟୁମ୍ନ ସେହି ନୀଳାଚଳରେ ମନ୍ଦିର ନିର୍ମାଣ କରାଇଲେ ଏବଂ ଦାରୁବ୍ରହ୍ମଙ୍କୁ ରଖାଇଲେ ।

ବହୁତ କାରିଗର ମୂର୍ତ୍ତି ଗଢ଼ିବାକୁ ଆସିଲେ; ମାତ୍ର କେହି ପାରିଲେ ନାହିଁ । ମୂର୍ତ୍ତି ଗଢ଼ିବା ତ ଦୂରର କଥା, ସେ ଦାରୁ ଦେହରେ ରେଖାଏ ମାତ୍ର ମାତ୍ର ସମସ୍ତଙ୍କ ହତିଆର ଭାଙ୍ଗିଗଲା । ଏଣୁ ସମସ୍ତେ ହତାଶ ହୋଇ ଫେରିଗଲେ । ରାଜା ବଡ଼ ମନଦୁଃଖରେ କାଳ କାଟୁଥାନ୍ତି । କପରି ମୂର୍ତ୍ତି ଗଢ଼ା ହେବ, ଏହି ଚିନ୍ତାରେ ତାଙ୍କୁ ନିଦ ମାଡ଼ ନ ଥାଏ ।

ଶେଷରେ ମହାପ୍ରଭୁ ନିଜେ ଗୋଟିଏ ବଢ଼େଇ ବେଶରେ ଆସିଲେ । ବଢ଼େଇଟି ନିପଟ ବୁଢ଼ା । ହାତ ଗୋଡ଼ ତାର ଥୁରୁ ଥୁରୁ ହେଉଛି । ଚମ ଲେଉଟି କେଉଁ ହୋଇଗଲାଣି । ଦାନ୍ତି ପାକୁଆ ଓ ମୁଣ୍ଡର ବାଳ ପାଚିଲା । ନାଁ ତାର ଅନନ୍ତ ମହାରଣା ବୋଲି ସେ ରାଜାଙ୍କୁ କହିଲା ।



ବଢ଼େଇକୁ ଦେଖି ରାଜା ଭାବିଲେ, କେତେ ବଡ଼ବଡ଼ କାରିଗର ତ ପାରିଲେ ନାହିଁ, ଏହି ପାକଲା ବୁଢ଼ାଟି କ'ଣ ପାରିବ ? ଏପରି ସନ୍ଦେହ କରି ସୁଦ୍ଧା ରାଜା ତାହାକୁ ମୂର୍ତ୍ତି ଗଢ଼ିବାକୁ ଆଦେଶ ଦେଲେ ।

ବୁଢ଼ାଟି ରାଜାଙ୍କୁ କହିଲା, "ମୁଁ ମନ୍ଦିର ଭିତରେ ପଶି କବାଟ ବନ୍ଦକରି ମୂର୍ତ୍ତି ଗଢ଼ିବି । ମୋ ପାଖକୁ କେହି ଯିବେ ନାହିଁ । ଏକୋଇଶି ଦିନ ପରେ କବାଟ ଫିଟିବ । ଏହା ଯଦି ସତ୍ୟ କରିବେ, ତେବେ ମୁଁ ମୂର୍ତ୍ତି ଗଢ଼ିବି ।"

ରାଜା ସତ୍ୟ କଲେ । ବୁଢ଼ା ମନ୍ଦିର ଭିତରକୁ ପଶିଯାଇ କବାଟ କିଳିଦେଲା । ରାଜା ସବୁଦିନେ କାନପାରନ୍ତି । ମନ୍ଦିର ଭିତରୁ ଠକ୍ ଠାକ୍ ଶବ୍ଦ ଶୁଣାଯାଉଥାଏ । ଏହିପରି ସାତ ଦିନ ବିତିଗଲା ପରେ ଶବ୍ଦ ଆଉ ଶୁଣାଗଲା ନାହିଁ । ରାଣୀ ଏ ଖବର ପାଇ ବଡ଼ ବିକଳ ହେଲେ । ମନ୍ଦିରର କବାଟ ପାଖରେ କେତେ ଡାକିଲେ; ମାତ୍ର କିଛି ଜବାବ ମିଳିଲା ନାହିଁ । ରାଣୀ ଭାବିଲେ, ବୁଢ଼ାଟି ନ ଖାଇ ନ ପିଇ ବୋଧହୁଏ ମରିଗଲା । ତାପରେ ମନ୍ଦିରର କବାଟ ତଡ଼ାଇ ରାଜା ଓ ରାଣୀ ଭିତରକୁ ଗଲେ; କିନ୍ତୁ ମନ୍ଦିର ଭିତରେ ବୁଢ଼ାକୁ ପାଇଲେ ନାହିଁ ।

ଏଣେ ସେ କାଠ ଖଣ୍ଡିକ ତିନି ଖଣ୍ଡ ହୋଇ ଦରଗଢ଼ା ଅବସ୍ଥାରେ ପଡ଼ିଥାଏ । ଏହା ଦେଖି ରାଜା ବଡ଼ ଆଶ୍ଚର୍ଯ୍ୟ ହେଲେ । ସେ ଭାବିଲେ ମିସ୍ତ୍ରୀ ବୁଢ଼ା ଗଲା କୁଆଡ଼େ ? ଶେଷରେ ସେ ସ୍ଥିର-କଲେ ଯେ, ସେହି ବୁଢ଼ାଜଣକ ବଢ଼େଇ ନୁହେଁ, ନିଜେ ଠାକୁର ବଢ଼େଇ ବେଶରେ ଆସିଥିଲେ । ତତ୍‌ପରେ ପ୍ରାର୍ଥନା କରି ରାଜା କହିଲେ, "ପ୍ରଭୁ ! ମୁଁ ସତ୍ୟ ରକ୍ଷା ନ କରି ସାତଦିନ ପରେ କବାଟ ଫିଟାଇ ବଡ଼ ଅପରାଧ ଅର୍ଜ୍ଜନ କରିଅଛି । ମୋତେ କ୍ଷମା କରନ୍ତୁ ।"

ଏହିପରେ ରାଜା ବହୁତ ମିନତି କରିବାରୁ ମନ୍ଦିରରୁ ଶୂନ୍ୟ-ବାଣୀ ହେଲା, "ରାଜା ! ବ୍ୟସ୍ତ ହୁଅ ନାହିଁ । ମୂର୍ତ୍ତି ଗଢ଼ା ଯେତିକି ହୋଇଛି, ସେତିକି ଥାଉ । ଆଉ ସେ ବିଷୟରେ ବୃଥା ଚେଷ୍ଟା

କର ହାଇବାଣ ହୁଅ ନାହିଁ । ସେହି ମୂର୍ତ୍ତିକୁ ପୂଜାକର । ମୁ ସେହି ରୂପରେ ପୂଜା ପାଇବ ।"

ଏହା ଶୁଣି ରାଜା ସେହି ମୂର୍ତ୍ତିଙ୍କୁ ପୂଜା କଲେ । ସେହିଦିନଠାରୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା—ଏହି ତିନି ମୂର୍ତ୍ତି ପୂଜା ପାଉଛନ୍ତି । ଇନ୍ଦ୍ରଦ୍ୟୁମ୍ନ ଅଳ୍ପଦିନ ମଧ୍ୟରେ ଏକ ପ୍ରକାଣ୍ଡ ଦେଉଳ ତୋଳାଇ ସେଥିରେ ଠାକୁରଙ୍କୁ ରଖାଇଲେ । ଉକ୍ତ ଦେଉଳ ପୁରୁଣା ହୋଇଯିବାରୁ ଗଙ୍ଗବଂଶର ଗଜପତି ରାଜା ଅନଙ୍ଗଭୀମ ଦେବ ଗୋଟିଏ ବିରାଟ ଦେଉଳ ତୋଳାଇ ସେଥିରେ ଠାକୁରଙ୍କୁ ରଖିଛନ୍ତି । ସେହି ଦେଉଳ ଆଜିଯାଏ ଅଛି । ତାହା ୧୨୦ହାତ ଉଚ୍ଚ । ଏଣୁ ତାର ନାଁ "ବଡ଼ଦେଉଳ' । ଦେଉଳର ଅଗ୍ରଭାଗରେ ନେଳିଆ ପଥରର ଗୋଟିଏ ଚକ୍ର ଅଛି । ତାହା ଲୋକମୁଖରେ 'ନୀଳଚକ୍ର' ବୋଲି କଥିତ ହୁଏ । ସେହି ଚକ୍ର ଉପରେ ଯେଉଁ ପତାକା ଉଡ଼େ, ତାହାର ନାମ 'ପତିତପାବନ ବାନା' । ସିଂହଦ୍ୱାର ପାଖରୁ ମନ୍ଦିର ଆଡ଼କୁ ବାଇଶିଟି ପାହାଚ ରହିଥିବାରୁ କେବଳ 'ବାଇଶି ପାହାଚ' କହିଲେ ସେହି ମନ୍ଦିରର ପାହାଚକୁହିଁ ବୁଝାଏ । ମନ୍ଦିର ବେଢ଼ାରେ ଗୋଟିଏ ପୁରୁଣା ବରଗଛ ଅଛି । ତାହା ଏକ କଳ୍ପ ବା ଚାରି ଯୁଗ ଶେଷ ପର୍ଯ୍ୟନ୍ତ ବଞ୍ଚିବ ବୋଲି ଲୋକମାନଙ୍କର ବିଶ୍ୱାସ । ଏଣୁ ସେହି ବଟବୃକ୍ଷର ନାମ 'କଳ୍ପବଟ' ।

ଠାକୁରଙ୍କର ରତ୍ନ ସିଂହାସନ ତିଆରି ହେଲା । ଭାରତର ସବୁ ଅଞ୍ଚଳର ରାଜାମାନେ ଜମି ଖଞ୍ଜା କରିଦେଲେ । ସେ ଜମିରୁ ଫସଲ ଏବଂ ଖଜଣା ଟଙ୍କା ଆଦାୟ ହୋଇ ପ୍ରତିବର୍ଷ ମନ୍ଦିରକୁ ଆସିଲା । ଏହି ବଡ଼ଦେଉଳରେ ଦିନକୁ ଛଅଟି ପଉଟି ଭୋଗ ହୁଏ ବୋଲି ସମସ୍ତେ ଜାଣନ୍ତି । ଠାକୁରଙ୍କ ପାଖରେ ନାନାପ୍ରକାର ଭୋଗ ହେଲେ ସୁଦ୍ଧା ପ୍ରତିଦିନ ଭାତ, ତରକାରି, ଡାଲି ଇତ୍ୟାଦି ଫଖୁଡ଼ି ଭୋଗ ହୁଏ । ଏପରି ଭୋଗ ଅନ୍ୟ କେଉଁଠି ମିଳେ ନାହିଁ । ଏହାର

ନାମ 'ଅବଡ଼ା' । ଏପରି ନାମକରଣର କାରଣ ମଧ୍ୟ ଅଛି । ଏହି ଭୋଗକୁ ଅଲଗା ଅଲଗା କରି ବାଢ଼ି ଖାଇବାର ଦରକାର ହୁଏ ନାହିଁ । ଏହି 'ଭୋଗ କୁଡ଼ୁଆ' ବା ହାଣ୍ଡିକୁ ମଝିରେ ରଖି ସେଥିରୁ ଯେତେ ଜଣ ପାରନ୍ତି, ଏକାବେଳକେ ଖାଆନ୍ତି । ଏହାର ଉଦ୍ଦେଶ୍ୟ ଏହି ଯେ, ସେ ପ୍ରସାଦରେ ଅଇଁଠା ବା ଅଜାତିର ପ୍ରଶ୍ନ ନାହିଁ । ହାଡ଼ି ସଙ୍ଗରେ ବ୍ରାହ୍ମଣ ମଧ୍ୟ ତାହା ଖାଇପାରେ । ଏଣୁ ଏହା 'ମହାପ୍ରସାଦ' ନାମରେ ବିଖ୍ୟାତ । ଅନ୍ୟ କେଉଁଠାରେ ଏପରି ସଙ୍ଗରେ ଖାଇବା ପ୍ରଥା ନାହିଁ ।

ଇନ୍ଦ୍ରଦ୍ୟୁମ୍ନ ରାଜା 'ଇନ୍ଦ୍ରଦ୍ୟୁମ୍ନ ପୋଖରୀ' ଖୋଳାଇଲେ । ରାଣୀ ଗୁଣ୍ଡିଚା ଦେବୀ 'ଗୁଣ୍ଡିଚା ମନ୍ଦିର' ତୋଳାଇଲେ । ଶ୍ରୀଗୁଣ୍ଡିଚା ଦିନଠାରୁ ବାହୁଡ଼ା ଯାତ୍ରା ପର୍ଯ୍ୟନ୍ତ ଠାକୁର ସେହି ମନ୍ଦିରରେ ରହନ୍ତି ।

ଠାକୁର ବିଶ୍ୱାବସୁଙ୍କ ପୂଜାରେ ସନ୍ତୁଷ୍ଟ ଥିଲେ । ମାତ୍ର ଇନ୍ଦ୍ରଦ୍ୟୁମ୍ନ ତାଙ୍କୁ ପୂଜାରେ ଭାଗ ନ ଦେବାରୁ ତାଙ୍କ ମନରେ ଭାରି ଦୁଃଖ ହେଲା । ପ୍ରଭୁ ଏହା ଜାଣିପାରି ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ କଲେ । ସେହିଦିନୁ ବିଶ୍ୱାବସୁ ଓ ତାଙ୍କ ବଂଶଧରମାନେ ପଣ୍ଡାମାନଙ୍କ ସହିତ ଜଗନ୍ନାଥଙ୍କ ପୂଜା କରି ଆସୁଛନ୍ତି । ବିଶ୍ୱାବସୁଙ୍କର ତ ପୁଅ ନ ଥିଲା । ଲଳିତା ଏକମାତ୍ର କନ୍ୟା । ସେ ବିଦ୍ୟାପତିଙ୍କୁ ବିବାହ କରିଥିଲା । ଏଣୁ ବିଦ୍ୟାପତି ବିଶ୍ୱାବସୁଙ୍କର ଜ୍ୱାଇଁ । ଜ୍ୱାଇଁଙ୍କୁ ସାଧୁଭାଷାରେ ଦୁହିତାପତି କୁହାଯାଏ । ଏଥିପାଇଁ ବିଶ୍ୱାବସୁ ବିଦ୍ୟାପତିଙ୍କୁ ନାମଧରି ନ ଡାକି ଦୁହିତାପତି ବୋଲି ଡାକୁଥିଲେ । ତେଣୁ ବିଦ୍ୟାପତିଙ୍କ ବଂଶଧରଙ୍କୁ 'ଦୁହିତାପତି' ବଂଶଧର କୁହାଗଲା । ଆଜିକାଲି ସେମାନଙ୍କୁ 'ଦଇତାପତି' ବଂଶଧର ବୋଲି କୁହାଯାଉଅଛି । ଏମାନେ ବଡ଼ଦେଉଳରେ ଠାକୁରଙ୍କ ପୂଜାରେ ମଧ୍ୟ ସାହାଯ୍ୟ କରନ୍ତି ।

# ତୀର୍ଥକାକ (୩)

ଶ୍ରୀମନ୍ଦିରର ବେଢ଼ା ଭିତରେ ବିମଳାଙ୍କ ମନ୍ଦିର ପାଖରେ ଗୋଟିଏ କାଉର ମୂର୍ତ୍ତି ଦେଖିବାକୁ ମିଳେ । ଏହାର ନାମ 'ଭୁଷଣ୍ଡିକାକ' ବା 'ତୀର୍ଥକାକ' । ଏହା ସମ୍ବନ୍ଧରେ ଏକ ରହସ୍ୟମୟ କିମ୍ବଦନ୍ତୀ ରହିଅଛି ।

ଇନ୍ଦ୍ରଦ୍ୟୁମ୍ନ ଦାରୁବ୍ରହ୍ମଙ୍କୁ ସମୁଦ୍ରରୁ ଆଣିବା ପରେ ନୀଳାଚଳଟି କିପରି ସ୍ଥାନ ଓ ତାହା ଠାକୁରଙ୍କର ରହିବା ପାଇଁ ଉପଯୁକ୍ତ କି ନୁହେଁ, ଏହି ବିଷୟ ଜାଣିବା ନିମିତ୍ତ ଦିନେ ନୀଳାଚଳ ଅଞ୍ଚଳକୁ ବୁଲି ଯାଇଥିଲେ । ସେଠାକୁ ଯାଇ ସେ ଦେଖିଲେ ଯେ, ଗୋଟିଏ କୁଆ ଝରଣା ଜଳରେ ଗାଧୋଇ ସାରିବା ପରେ ଏକ ଦିବ୍ୟସୁନ୍ଦର ଦେବପୁରୁଷରେ ପରିଣତ ହେଲା । ସେହି ଦେବପୁରୁଷଙ୍କର ଚାରୋଟି ହାତ ଥିଲା । ସେହି ଦେବତା କାଳେ ଅନ୍ତର୍ଦ୍ଧାନ ହୋଇଯିବେ, ଏହା ଭାବି ରାଜା ଶୀଘ୍ର ଦୌଡ଼ିଯାଇ ତାଙ୍କ ପାଖରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ପଚାରିଲେ, "ମହାତ୍ମା ! ଆପଣ କିଏ ? ଦୟାକରି ପରିଚୟ ଦେବେ କି ?"

ଏହି ପ୍ରଶ୍ନ ଶୁଣି ଦେବପୁରୁଷ ନିଜର ପରିଚୟ ଯେପରି ଭାବରେ ପ୍ରଦାନ କଲେ, ତାହା ତଳେ ଦିଆଗଲା ।

"ମୋର ନାମ ଗରୁଡ଼ । ଗୋଟିଏ ଅଭିଶାପ ଯୋଗୁଁ ମୁଁ ସତ୍ୟଯୁଗ ଆରମ୍ଭରେ କାକ ହୋଇଗଲି । କାକ ହେବା ପରେ ମୁଁ ବିଷ୍ଣୁଙ୍କୁ ପ୍ରାର୍ଥନା କରି ଏ ଅଭିଶାପରୁ ମୁକ୍ତ ହେବାର ଉପାୟ ପଚାରିଲି । ତହୁଁ ସେ ଦୟାକରି କହିଲେ, ଏଥିରୁ ମୁକ୍ତ ହେବାର କ୍ଷମତା ମୋର ନାହିଁ । ମାତ୍ର ତୁମେ ଯଦି ମୋ କଥା ମାନିବ, ତେବେ ଏ ଅଭିଶାପ ଟିକିଏ କୋହଳ ହୋଇଯାଇ ପାରେ । ଦୀର୍ଘ ଚାରିଯୁଗ ପର୍ଯ୍ୟନ୍ତ କାକ ହୋଇ ରହିବାକୁ ତୁମକୁ ଅଭିଶାପ

ହୋଇଛୁ । ଏହି ଚାରିଯୁଗ ମଧ୍ୟରୁ ପ୍ରଥମ ତିନୋଟି ଯୁଗ ଯଦି ତୁମେ ତୀର୍ଥ ଭ୍ରମଣ କରି କେବଳ ପ୍ରସାଦ ଭକ୍ଷଣ କରିବ ଏବଂ ତୀର୍ଥ-ମାନଙ୍କରେ ଦାନ, ପୁଣ୍ୟ କରୁଥିବା ବ୍ୟକ୍ତିମାନଙ୍କର ସାକ୍ଷୀ ସ୍ୱରୂପ ସେମାନଙ୍କର ସକଳ ପୁଣ୍ୟ ବିଷୟ ଧର୍ମ ଦେବତାଙ୍କୁ ଜଣାଇ ସେମାନଙ୍କର ମୁକ୍ତିବିଧାନ କରିବ, ତେବେ ଆଉ ଅବଶିଷ୍ଟ ଗୋଟିଏ ଯୁଗରୁ ଅଧେ ତୁମର କଟିଯିବ । ଅନ୍ୟ ଅଧିକ କଟିବା ଅତି ସହଜ ହେବ, ଯଦି ତୁମେ କଳିଯୁଗ ଆରମ୍ଭରେ ନୀଳାଚଳ ଧାମର ବିଷ୍ଣୁକୂପରେ ସ୍ନାନ କର । ଫଳରେ ତିନୋଟି ଯୁଗ କାକ ହୋଇ ରହି ତୁମେ ପୁଣି ମୋ ପାଖକୁ ଫେରିଆସିବ । କଳିଯୁଗରେ ତୁମକୁ ଆଉ ଦୁଃଖ ଭୋଗିବାକୁ ପଡ଼ିବ ନାହିଁ । ସେହି ନୀଳାଚଳ ଏକ ପବିତ୍ର ପୁଣ୍ୟଭୂମି । ମୁଁ କଳିଯୁଗରେ ସେହିଠାରେ ବିଜେ କରିବି । ସେ ସ୍ଥାନ ସାକ୍ଷାତ୍ ବୈକୁଣ୍ଠ ବୋଲି ଜାଣ ।

"ବିଷ୍ଣୁଙ୍କ ଆଦେଶ ଅନୁସାରେ ମୁଁ ତିନିଯୁଗ ଧରି ନାନା ତୀର୍ଥ ଭ୍ରମଣ କଲି ଓ ସବୁ ତୀର୍ଥରେ ଧାର୍ମିକ ଲୋକମାନଙ୍କର ସାକ୍ଷୀ ରୂପେ କାର୍ଯ୍ୟ କରି ସେମାନଙ୍କର ମୁକ୍ତିବିଧାନ କଲି । ଶେଷରେ କଳିଯୁଗ ଆରମ୍ଭ ହେବାରୁ ମୁଁ ବିଷ୍ଣୁକୂପ ଖୋଜି ଖୋଜି ବହୁତ କୂପ ଓ ଝରଣାରେ ସ୍ନାନ କରିବାରେ ଲାଗିଲି । ନୀଳାଚଳ କେଉଁଠି ଓ ବିଷ୍ଣୁକୂପ କେଉଁଠି, ଏକଥା ମୋତେ ଜଣା ନ ଥିଲା । ଏଣୁ ଚାରିଆଡ଼େ ବୁଲି ବୁଲି ସ୍ନାନ କଲି । କିନ୍ତୁ କେଉଁଠି କିଛି ଫଳ ପାଇଲି ନାହିଁ । ମୋର ସୌଭାଗ୍ୟବଳରୁ ଆଜି ଏହି ପବିତ୍ର ଝରରେ ଅକସ୍ମାତ୍ ଗାଧୋଇପଡ଼ି ଶାପମୁକ୍ତ ହେଲି । ବର୍ତ୍ତମାନ ମୁଁ ବୈକୁଣ୍ଠକୁ ଯିବି । ସେଠାରେ ପହଞ୍ଚି ପ୍ରଭୁଙ୍କୁ ଦର୍ଶନ କଲେ ପୁଣି ତାଙ୍କ ସହିତ ଏହି ପୁଣ୍ୟପୀଠକୁ ଆସିବାକୁ ପଡ଼ିବ । ଏହି ସ୍ଥାନ ଅତି ପବିତ୍ର ।" ଏହା କହି ସେହି ଦିବ୍ୟପୁରୁଷ ଜଣକ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କଠାରୁ ଏହି ସମସ୍ତ ବିଷୟ ଶୁଣି

ଇନ୍ଦ୍ରଦ୍ୟୁମ୍ନ ବିସ୍ମିତ ହେଲେ । ନୀଳାଚଳ ଧାମ ଯେ ଏକ ଅଦ୍ୱିତୀୟ ପୁଣ୍ୟଭୂମି, ଏଥିରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ହେଲା ।

ଏହି ପ୍ରାଚୀନ କମ୍ବଦନ୍ତୀକୁ ବଞ୍ଚାଇ ରଖିବାକୁ ଓ ନୀଳାଚଳ ତୀର୍ଥର ସୂଚନା ଦେବାକୁ ରାଜା ଇନ୍ଦ୍ରଦ୍ୟୁମ୍ନ ସେଠାରେ ମନ୍ଦିର ତୋଳାଇ, ମନ୍ଦିରର ବେଢ଼ାରେ ସେହି କାକର ମୂର୍ତ୍ତି ରଖାଇଲେ । ସେତେବେଳେ ସେଠାରେ ନୀଳବର୍ଣ୍ଣର ଗୋଟିଏ ପାହାଡ଼ ଥିଲା । ତେଣୁ ସେ ସ୍ଥାନର ନାମ 'ନୀଳାଚଳ' ହୋଇଥିବା ଶୁଣାଯାଏ । 'ପୁରୁଷ ଉତ୍ତମ ଶ୍ରୀଜଗନ୍ନାଥ' ସେଠାରେ ବିଜେ କରିବାରୁ ତାହାର ଅନ୍ୟ ଏକ ନାମ 'ପୁରୁଷୋତ୍ତମ କ୍ଷେତ୍ର' ହେଲା । ଏହାକୁ 'ଶ୍ରୀକ୍ଷେତ୍ର' ମଧ୍ୟ କୁହାଯାଏ । ନୀଳାଚଳନାଥ ଶ୍ରୀଜଗନ୍ନାଥ ଥିବା ମନ୍ଦିରର ନାମ ଶ୍ରୀମନ୍ଦିର ।

## ମେଘମାଳଆ ପିଠା ଓ ସ୍ୱର୍ଗରାଜ ଇନ୍ଦ୍ର (୪)

'ଶ୍ରୀଜଗନ୍ନାଥଙ୍କ ପାଖରେ ଗୋଟିଏ ବଡ଼ିଆ ପିଠା ହୁଏ । ତାର ନାମ 'ମେଘମାଳଆ' । ଏ ପିଠାର ନାମ ଏପରି ହେବାର ଅଦ୍ଭୁତ ରହସ୍ୟ ଅଛି । ଥରେ ଜଣେ ପଣ୍ଡା ଠାକୁରଙ୍କ ବଡ଼ସିଂହାର ବେଶ ପରେ ନିଜ ଘରକୁ ବାହାରିଛନ୍ତି, ହାତରେ ତାଙ୍କର ସେହି ପିଠାରୁ ଗୋଟିଏ ଥାଏ । ସେ ଇଚ୍ଛାକଲେ ଯେ, ପିଠାଟିକୁ ବିକିକରି ପଇସା ନେବେ । ତେଣୁ ସେ ଡାକ ପକାଇଲେ, "କିଏ ପିଠା ନେବ, ବଡ଼ିଆ ଭୋଗ, ଟଙ୍କାଟିଏ ଦେଇ ନେଇଯାଅ ।"

ସେତେବେଳକୁ ରାତି ପ୍ରାୟ ୧୨ଟା । ବାଇଶିପାହାଚ ପାଖରେ ଜଣେ ଭଦ୍ରଲୋକ ପଣ୍ଡାଙ୍କ ହାତକୁ ଟଙ୍କାଟିଏ ଦେଇ ପିଠାଟି ନେଲେ



ଏବଂ ସ୍ୱର୍ଗଦ୍ୱାର ଆଡ଼କୁ ଗଲେ । ପଣ୍ଡା ସିଂହଦ୍ୱାର ପାଖ ଆଲୁଅରେ ଦେଖିଲେ ଯେ, ତାହା ଟଙ୍କା ନୁହେଁ; ସୁନା ମୋହରଟିଏ । ତେଣୁ ସେ ଭାବିଲେ, କେହି ରାଜକର୍ମଚାରୀ ଭୁଲରେ ଏହା ଦେଇଛନ୍ତି । ଯଦି ରାଜା ଏକଥା ଜାଣନ୍ତି, ତେବେ ମୋର ଅବସ୍ଥା ଅସମ୍ଭାଳ ହେବ ।

ଏଣୁ ପଣ୍ଡା ଭଦ୍ରଲୋକଙ୍କ ପଛେ ପଛେ ସ୍ୱର୍ଗଦ୍ୱାର ଅଡ଼କୁ ତର ତର ହୋଇ ଗଲେ ଏବଂ ସେ ଭଦ୍ରଲୋକଙ୍କୁ ଅଟେରେ ଯାଉଥିବାର ଦେଖିଲେ । ପଣ୍ଡା ତାଙ୍କୁ ଆଉ ପଛରୁ ନ ଡାକ ଠିକଏ କାଶିଦେଲେ· ତାହା ଶୁଣିପାରି ଭଦ୍ରଲୋକ ଫେରିଚାଲେ, "କଏ ତୁମେ ?"

ପଣ୍ଡା କହିଲେ, "ଆପଣ ମୋ ଠାରୁ ପିଠା ଆଣିଥିଲେ ନା ?"

—"ହଁ, ମୁଁ ତ ତା'ର ଦାମ୍ ଦେଇ ଆସିଛି । ଆଉ କ'ଣ ?"

—"ନାହିଁ ଆଜ୍ଞା, ଆପଣ ମୋତେ ଭୁଲରେ ସୁନା ମୋହରଟିଏ ଦେଇ ଆସିଛନ୍ତି ।"

—"ହଉ ରଖ । ମୁଁ ଯାହା ଥରେ ଦିଏ, ଆଉ ଫେରାଇ ନିଏ ନାହିଁ ।"

—"ନାହିଁ ଆଜ୍ଞା, ଆପଣ ବୋଧହୁଏ ରାଜକର୍ମଚାରୀ । ଠାକୁର-ରାଜା ଯେବେ ଏକଥା ଜାଣନ୍ତି, ତେବେ ମୋର ଆଉ ରକ୍ଷା ନାହିଁ ।"

—"ମୁଁ ରାଜକର୍ମଚାରୀ ନୁହେଁ, ତୁମେ ଡରୁଛ କାହିଁକି ?"

—"ତେବେ ଆପଣ କିଏ ?"

—"ମୁଁ ସ୍ୱର୍ଗର ରାଜା ଇନ୍ଦ୍ର । ମହାପ୍ରଭୁଙ୍କର ବଡ଼ସିଂହାର ବେଶ ଦେଖିବାକୁ ଆସିଥିଲି । ପିଠାଟିର ସୁବାସରେ ମୁଗ୍ଧ ହୋଇ ସେହିଟିକୁ କିଣିନେଲି ।"

—"ଆପଣ ଇନ୍ଦ୍ର ବୋଲି ମୋର ବିଶ୍ୱାସ ହେଉ ନାହିଁ । ଏହାର ପ୍ରମାଣ କ'ଣ ?"

—"ଆଚ୍ଛା, ଏହି ମନ୍ତ୍ରଟି ମନେରଖ । ଏହା ଜପିବା ମାତ୍ରେ ବର୍ଷା ହେବ । ତୁମେ ଏ ବିଷୟ କାହାକୁ କହିବ ନାହିଁ । କହିଲେ ମୁଣ୍ଡ ଫାଟିଯିବ ।" ଏହା କହି ଇନ୍ଦ୍ର ପଣ୍ଡାଙ୍କୁ ମନ୍ତ୍ରଟି ଶିଖାଇ ଦେଲେ ।

ତହିଁପରଦିନ ସକାଳୁ ପଣ୍ଡା ସେ ମନ୍ତ୍ରର ଶକ୍ତି ପରୀକ୍ଷା କରିବା ନିମିତ୍ତ ତାହାକୁ ଦୁଇଥର ଜପିଦେଲେ । ସଙ୍ଗେ ସଙ୍ଗେ ଅସରାଏ ବର୍ଷା ହୋଇଗଲା । ଏହା ଦେଖି ସେହି ପଣ୍ଡା ଅନ୍ୟ ପଣ୍ଡାମାନଙ୍କୁ କହିଲେ "ମୁଁ ବର୍ତ୍ତମାନ ଇଚ୍ଛାକଲେ ବର୍ଷା କରାଇଦେବି ।" ପଣ୍ଡାମାନେ ପ୍ରଥମେ ତାଙ୍କ କଥା ଶୁଣି ହସିଲେ । ମାତ୍ର ଦୁଇ ଚାରି ଥର ବର୍ଷା କରାଇ ଦେଖାଇ ଦେବାରୁ ସମସ୍ତେ ଅବାକ୍ ହୋଇଗଲେ । ତାଙ୍କୁ ଏ ବିଷୟରେ ଯେ ଯେତେ ପଚାରିଲେ ମଧ୍ୟ ସେ କିଛି କହିଲେ ନାହିଁ

ଶେଷରେ ଏ ବିଷୟ ଠାକୁରରାଜାଙ୍କ କାନକୁ ଗଲା । ପଣ୍ଡା ରାଜାଙ୍କ ପାଖରେ ବର୍ଷା କରାଇ ଦେଖାଇଦେଲେ । ରାଜା ତାଙ୍କୁ ବହୁତ ପୁରସ୍କାର ଯାଚି ମନ୍ତ୍ରଟି କେଉଁଠୁ ଶିଖିଛ ବୋଲି ପଚାରିଲେ । ତଥାପି ପଣ୍ଡା କିଛି କହିଲେ ନାହିଁ । ରାଜା ଅତି ବାଧ୍ୟ କରି ଦଣ୍ଡ ଦେବାକୁ ଧମକାଇବାରୁ ସେ ସମସ୍ତ ଘଟଣା ଖୋଲି କହିଦେଲେ ।

ସଙ୍ଗେ ସଙ୍ଗେ ପଣ୍ଡାଙ୍କର ଛାତି ଫାଟିଯାଇ ତାଙ୍କର ମୃତ୍ୟୁ ହେଲା । ରାଜା ବଡ଼ ଦୁଃଖିତ ହେଲେ । ସେହି ଦିନଠାରୁ ସେ ପିଠାର ନାମ "ମେଘମାଳିଆ ପିଠା" ରଖାଗଲା ।

## ମାଣିକ ପାଟଣା (୫)

ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ତୋଳାଇ ସେଥିରେ ତିନି ମୂର୍ତ୍ତିଙ୍କର ପୂଜା କରାଇଲେ । ରାଜାଙ୍କର ପୁଅ ନ ଥିବାରୁ ସେ ଠାକୁରଙ୍କର ସମସ୍ତ ଦାୟିତ୍ୱ ଓଡ଼ିଶାର ଗଜପତି ରାଜାଙ୍କୁ ଦେଇ-ଥିଲେ । ସେହି ଦିନଠାରୁ ଗଜପତି ରାଜାମାନେ ଜଗନ୍ନାଥ ମନ୍ଦିରର ସମସ୍ତ ବିଷୟ ବୁଝି ଆସୁଥିଲେ । [ ଏବେ ତାହା ସରକାରଙ୍କ ଦ୍ୱାରା ପରିଚାଳିତ ହେଉଅଛି ] । ଏଣୁ ସେହି ବଂଶକୁ ଆଦିପର୍ଯ୍ୟନ୍ତ ଠାକୁରରାଜା ବଂଶ ବୋଲି କୁହାଯାଉଛି । ଓଡ଼ିଶାର ଅନ୍ୟାନ୍ୟ ରାଜା ତଥା ସାଧାରଣ ଲୋକେ ଜଗନ୍ନାଥଙ୍କୁ ଭକ୍ତି କଲା ପରି ଏହି ଗଜପତି ରାଜାଙ୍କୁ ଭକ୍ତି କରିଥାଆନ୍ତି ।

ସେହି ଗଜପତି ବଂଶରେ ପୁରୁଷୋତ୍ତମ ଦେବ ବୋଲି ଜଣେ ପ୍ରତାପୀ ରାଜା ଜନ୍ମ ହୋଇଥିଲେ । ସେ ଯେପରି ବୀର, ସେହିପରି ଦୟାଳୁ ଓ କ୍ଷମା ଥିଲେ । ଜଗନ୍ନାଥଙ୍କୁ ସେ ଭାରି ଭକ୍ତି କରୁଥିଲେ । ଏପରିକି ପ୍ରତିଦିନ ମନ୍ଦିରର ତତ୍ତ୍ୱ ନ ନେଇ ରାଜା ଖାଇବାକୁ ଯାଆନ୍ତି ନାହିଁ । ଠାକୁରଙ୍କର ଧୂପ ଓ ଆଳତି ସମୟରେ ରାଜା ଚଅଁର ପଙ୍ଖା କରନ୍ତି । ଠାକୁର ରଥରେ ବିଜେ କଲାବେଳେ ରାଜା ମଧ୍ୟ ସୁନାର ଝାଡ଼ୁଣିକୁ ଗୋଲା-ଚନ୍ଦନରେ ବୁଡ଼ାଇ ରଥ ଉପରେ ଝାଡ଼ୁ କରନ୍ତି । ଏହି ଝାଡ଼ୁ କରିବାକୁ 'ଛେରାପହଁରା' କୁହାଯାଏ । ଏପରି କାର୍ଯ୍ୟକୁ ରାଜା ଘୃଣା ନ କରି ବରଂ ଭକ୍ତିର ସହିତ ଅତି ଆଗ୍ରହରେ କରିଥାଆନ୍ତି ।

ଦିନେ ପୁରୁଷୋତ୍ତମ ଦେବ ରଥ ଉପରେ ଏହି କାର୍ଯ୍ୟ କରୁଥାଆନ୍ତି, ଦୈବାତ୍ କାଞ୍ଚି ରାଜା ନିଜ ପରିବାରବର୍ଗଙ୍କୁ ସଙ୍ଗରେ ଆଣି ରଥ ଉପରେ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ପହଞ୍ଚିଲେ । ସେ ପୁରୁଷୋତ୍ତମ ଦେବଙ୍କର 'ଛେରାପହଁରା' କାର୍ଯ୍ୟ ଦେଖି ଭାରି

ଘୃଣା କଲେ । ପୁରୁଷୋତ୍ତମ ଦେବଙ୍କୁ ଏକଥା କିନ୍ତୁ ଜଣା ନ ଥାଏ । ସେ ରଥ ଉପରେ ଥାଇ କାଞ୍ଚି ରାଜକେମାଙ୍କୁ ଦେଖି ତାଙ୍କ ରୂପରେ ମୁଗ୍ଧ ହୋଇଗଲେ ଏବଂ ତାଙ୍କୁ ନିଜର ରାଣୀ କରିବାକୁ ମନସ୍ଥ କଲେ । କିଛିଦିନ ଅନ୍ତେ ପୁରୁଷୋତ୍ତମ ଦେବ କାଞ୍ଚିକୁ ଏହି ପ୍ରସ୍ତାବ ପଠାଇଲେ । ପ୍ରସ୍ତାବ ଶୁଣି କାଞ୍ଚି ରାଜା ରାଗିଯାଇ ଦୂତକୁ କହିଲେ, "ଯେଉଁ ରାଜା ଚଣ୍ଡାଲର କାର୍ଯ୍ୟ କରନ୍ତି, ସେ ମୋ କନ୍ୟାର ସ୍ୱାମୀ ହେବାକୁ ଅନୁପଯୁକ୍ତ । କେଉଁ ସାହସରେ ସେ ଏ ପ୍ରସ୍ତାବ ପଠାଇଲେ ! ମୁଁ ଚଣ୍ଡାଳ ହସ୍ତରେ ମୋ କନ୍ୟାକୁ ଦେଇ ନ ପାରେ ।"

ଦୂତ ଫେରିଆସି ରାଜାଙ୍କୁ ସବୁକଥା ଜଣାଇଲା । ପୁରୁଷୋତ୍ତମ ଦେବ କାଞ୍ଚି ରାଜାଙ୍କ ଉତ୍ତର ଶୁଣି ଲଜ୍ଜିତ ହେଲେ । ତାଙ୍କର ଆଉ ଗୃହ କଅଣ ? ସେ ନିଜର ମନ କଥା ଶ୍ରୀ ଜଗନ୍ନାଥଙ୍କୁ ଜଣାଇ କହିଲେ, "ପ୍ରଭୋ ! କାଞ୍ଚି ରାଜା ଚଣ୍ଡାଳ କହିଲେ ବୋଲି ମୋତେ ଅପମାନ ହେଉ ନାହିଁ । ଏପରି ବ୍ୟବହାର ଦ୍ୱାରା ବରଂ ସେ ଆପଣଙ୍କର ନିନ୍ଦା କଲେ । ଏଥିପାଇଁ ମୋ ମନରେ ବେଶୀ ଦୁଃଖ । ଠାକୁରଙ୍କର ସେବା କଲେ ମନୁଷ୍ୟ କ'ଣ ଚଣ୍ଡାଳ ହୁଏ ? ଯେଉଁ ରାଜାକୁ ସାରା ଭାରତର ରାଜାମାନେ ଦେବତା ପରି ଭକ୍ତି କରନ୍ତି, ସେ ପୁଣି ଚଣ୍ଡାଳ ହୋଇପାରେ ! ଯୁଦ୍ଧ କରି କାଞ୍ଚିରାଜାଙ୍କୁ ଉପଯୁକ୍ତ ଶିକ୍ଷା ଦେଇପାରନ୍ତି, ମାତ୍ର ଶ୍ରୀମୁଖରୁ ଆଜ୍ଞା ନ ହେଲେ ଏ କାର୍ଯ୍ୟ ତାହା କରି ନ ପାରେ ।"

ରାଜା ପୁରୁଷୋତ୍ତମ ଦେବ ଠାକୁରଙ୍କର ଜଣେ ପ୍ରଧାନ ଭକ୍ତ । ସେ ଧ୍ୟାନରେ ବସିବାବେଳେ ସବୁଦିନେ ଠାକୁରଙ୍କୁ ଏହିକଥା ଜଣାଉଥାନ୍ତି । ଶ୍ରୀ ଜଗନ୍ନାଥ ଭକ୍ତର ଦୁଃଖରେ ଦୁଃଖୀ ହେଲେ । ଦିନେ ସେ ରାଜାଙ୍କୁ ସ୍ୱପ୍ନରେ କହିଲେ, "ରାଜା ! ତୁମେ ମନରେ କଷ୍ଟ ଆଣ ନାହିଁ । ମୁଁ ତୁମର ଅପମାନ ଦୂର କରିବ । କାଞ୍ଚି ରାଜା

ମୋ ଭକ୍ତର ନିନ୍ଦା କରିବାର ଉପଯୁକ୍ତ ଶାସ୍ତି ପାଇବ । ତୁମେ କାଞ୍ଚି ରାଜ୍ୟ ଆକ୍ରମଣ କର । ମୁଁ ତୁମ ସହିତ ଯୁଦ୍ଧକୁ ଯିବ ।"

ମହାପ୍ରଭୁଙ୍କ ନିର୍ଦ୍ଦେଶ ପାଇ ରାଜା ଯୁଦ୍ଧକୁ ବାହାରିଲେ । ଗଲାବେଳେ ସେ ଠାକୁରଙ୍କୁ ଜଣାଇଲେ, "ପ୍ରଭୋ ! ତୁମର ଆଦେଶ ପାଇ ମୁଁ ଯୁଦ୍ଧକୁ ଯାଉଛି । ତୁମେ ମୋତେ ଭରସା ଦେବ ।"

ରାଜା ପୁରୁଷୋତ୍ତମ ଦେବ କାଞ୍ଚି ଯୁଦ୍ଧକୁ ଯିବାବେଳେ ବାଟରେ ଗଞ୍ଜାମ ଜିଲ୍ଲା ପଡ଼ିଲା । ସେହି ଜିଲ୍ଲାର ଉତ୍ତର ସୀମାକୁ ଲାଗି 'ଚିଲିକା ହ୍ରଦ' । ଚିଲିକା କୂଳରେ ଜଣେ ସ୍ତ୍ରୀ ଲୋକ ରାଜାଙ୍କୁ ସାକ୍ଷାତ କଲା । ରତ୍ନ ମୁଦିଟିଏ ଦେଖାଇ ସେ ରାଜାଙ୍କୁ କହିଲା,



"ମାଣିମା ! ଏ ମୁଦି ନେଇ ମୋତେ ଟଙ୍କାଟିଏ ଦିଅନ୍ତୁ । ଏହି ମୁଦିଟି ବନ୍ଧା ରଖି ଦୁଇଜଣ ବୀର ବର୍ତ୍ତମାନ ମୋଠାରୁ ଦହି ଖାଇ ଗଲେ । ଗୋରା ଜଣକ ଧଳା ଘୋଡ଼ାରେ ଏବଂ କଳା ଜଣକ କଳା ଘୋଡ଼ାରେ

ଚଢ଼ିଥିଲେ । ସେମାନେ ଚଞ୍ଚଳ ହୋଇ ଚାଲିଗଲେ । ଆପଣଙ୍କୁ ଏ ମୁଦି ଦେଇ ମୋର ଦହି ପଇସା ନେବାକୁ ମୋତେ କହିଗଲେ । ବୋଧହୁଏ ସେମାନେ ମନ୍ତ୍ରୀ ଓ ସେନାପତି ହେବେ !”

ସେତେବେଳେ ମନ୍ତ୍ରୀ ଓ ସେନାପତି ରାଜାଙ୍କ ସଙ୍ଗରେ ଥାଆନ୍ତି । ସେମାନେ ଗଉଡ଼ୁଣୀର କଥା ଶୁଣି ଭାବିଲେ, କେହି ଚୋର ବୋଧହୁଏ ଏହି ସ୍ତ୍ରୀ ଲୋକଟିକୁ ଏପରି କହି ଠକ ଦେଇ ଚାଲିଯାଇଛି । ମାତ୍ର ରାଜା କଳା ଘୋଡ଼ା ଓ ଧଳା ଘୋଡ଼ା କଥା ଶୁଣି ଟିକିଏ ଚମକିତ ହୋଇପଡ଼ିଲେ । ପରେ ମୁଦିଟିକୁ ଦେଖି ଚିହ୍ନିନେଲେ । ସେ ଜାଣି-ପାରିଲେ, ନିଶ୍ଚୟ ପ୍ରଭୁ ଜଗନ୍ନାଥ ଓ ବଳରାମ କାଞ୍ଚି ଯୁଦ୍ଧକୁ ଯାଇ-ଛନ୍ତି । ସେ ଦୁହେଁ ଏ ଗଉଡ଼ୁଣୀଠାରୁ ଦହି ଖାଇଛନ୍ତି । ତହୁଁ ରାଜା ଗଉଡ଼ୁଣୀକୁ ଚାହିଁ କହିଲେ, “ତୁ ଅତି ଭାଗ୍ୟବତୀ ! କେଉଁ ଲୋକର ଏଡ଼େ ଭାଗ୍ୟ ହେବ ଯେ, ନିଜେ ମହାପ୍ରଭୁ ତା ହାତରୁ ନେଇ ଖାଇବେ । ତୋର ସମସ୍ତ ପାପ ଆଜି କ୍ଷୟ ହେଲା । ତୁ ପୁଣ୍ୟମୟୀ, ଧନ୍ୟ ତୋର ଚକ୍ଷୁ ! ତୁ ସେଥିରେ ମହାପ୍ରଭୁଙ୍କୁ ଦର୍ଶନ କଲୁ ।” ଏହିପରି ପ୍ରଶଂସା କରି ରାଜା ଗଉଡ଼ୁଣୀକୁ ବହୁ ପୁରସ୍କାର ଦେଲେ । ଆଉମଧ ଗଉଡ଼ୁଣୀର ନାମ ‘ମାଣିକ’ ହୋଇଥିବାରୁ ସେହି ସ୍ଥାନଟିର ନାମ ‘ମାଣିକ ପାଟଣା’ ରଖିଲେ ।

ମହାପ୍ରଭୁ ଯୁଦ୍ଧକୁ ଯାଇଛନ୍ତି ଜାଣି ରାଜା ଆନନ୍ଦିତ ହେଲେ । ରାଜା ପହଞ୍ଚିବା ପରେ ଘମାଘୋଟ ଯୁଦ୍ଧ ହେଲା । ଶେଷରେ କାଞ୍ଚି ରାଜା ପରାସ୍ତ ହେଲେ । ପୁରୁଷୋତ୍ତମ ଦେବ କାଞ୍ଚି ରାଜକନ୍ୟା ପଦ୍ମାବତୀଙ୍କୁ ବନ୍ଦିନୀ କରି ନେଇ ଆସିଲେ ଏବଂ ତାଙ୍କୁ ମନ୍ତ୍ରୀଙ୍କ ଜିମା କରି କହିଲେ, ତୁମେ ଏହାଙ୍କୁ ଜଣେ ଚଣ୍ଡାଳ ହସ୍ତରେ ପ୍ରଦାନ କର ।”

ମନ୍ତ୍ରୀ ରାଜାଜ୍ଞାମାନଙ୍କୁ ନିଜ ଘରେ ଝିଅ ପରି ରଖିଥାନ୍ତି । ପୁଣି ସେବର୍ଷ ରଥଯାତ୍ରା ପଡ଼ିଲା । ରାଜା ଛେରାପହଁରା କାର୍ଯ୍ୟ କରୁଥିବା-

ବେଳେ ମନ୍ତ୍ରୀ ପଦ୍ମାବତୀଙ୍କୁ ଆଣି ତାଙ୍କୁ ଅର୍ପଣ କରି କହିଲେ, "ମଣିମା ! ଆପଣ ବର୍ତ୍ତମାନ ଚଣ୍ଡାଳର କାର୍ଯ୍ୟ କରୁଛନ୍ତି । ଏଣୁ ଆପଣଙ୍କ ଆଜ୍ଞା ପାଳନ କରି ମୁଁ ଏହାଙ୍କୁ ଠାକୁରଙ୍କ ସେବକ-ଚଣ୍ଡାଳ ହସ୍ତରେ ଅର୍ପଣ କରୁଛି । ଶ୍ରୀହଜୁର ଗ୍ରହଣ କରନ୍ତୁ ।"

ରାଜା ମନ୍ତ୍ରୀଙ୍କ ଚତୁରତାରେ ସନ୍ତୁଷ୍ଟ ହେଲେ । କାଞ୍ଚି ରାଜଜେମା ପଦ୍ମାବତୀ ଓଡ଼ିଶାର ଗଜପତି ରାଜା ପୁରୁଷୋତ୍ତମ ଦେବଙ୍କର ରାଣୀ ହୋଇ ରହିଲେ ।

# ଠାକୁରଙ୍କ ମୁଣ୍ଡରେ ବାଳ (୭)

ଶ୍ରୀ ଜଗନ୍ନାଥଙ୍କ ବଡ଼ପଣ୍ଡା ପ୍ରତିଦିନ ମହାପ୍ରଭୁଙ୍କ ସ୍ନାନ ମାର୍ଜଣା ସାରି ଠାକୁରଙ୍କର ଛଡ଼ା ଫୁଲମାଳ, ପାଦୋଦକ ଓ ବାଲଧୂପର ପ୍ରସାଦ ନେଇ ଠାକୁରରାଜାଙ୍କୁ ପ୍ରଦାନ କରନ୍ତି । ରାଜା ସେହି ମାଳ-ଗ୍ରହଣ ଓ ପ୍ରସାଦ ସେବନ ପରେ ତାଙ୍କର ପ୍ରାତଃ ଭୋଜନ କରନ୍ତି ।

ଦିନେ ଠାକୁରଙ୍କ ମାର୍ଜଣା ଓ ବାଲଧୂପ କାର୍ଯ୍ୟ ଶେଷ କରି ବଡ଼ପଣ୍ଡା ରାଜନବରକୁ ବାହାରିଛନ୍ତି, କୌଣସି କାର୍ଯ୍ୟରେ ତାଙ୍କୁ ଘରକୁ ଯିବାକୁ ପଡ଼ିଲା । ଏଣୁ ସେ ପ୍ରସାଦ ଓ ଫୁଲମାଳ ଇତ୍ୟାଦି ଧରି ନିଜ ଘରକୁ ଚାଲିଗଲେ । ସେଠାରେ ତାଙ୍କର ସ୍ତ୍ରୀ ଠାକୁରଙ୍କ ଛଡ଼ାହାରଟିକୁ ଶ୍ରଦ୍ଧାରେ ନିଜ ଖୋସାରେ ଗୁଞ୍ଜାଇଦେଲେ । ଏକଥା ପଣ୍ଡାଙ୍କୁ ଜଣା ନ ଥାଏ । କାର୍ଯ୍ୟ ଶେଷ ପରେ ପଣ୍ଡା ରାଜବାଟୀକୁ ଯିବାପାଇଁ ଚଞ୍ଚଳ ହୋଇପଡ଼ିଲେ । ସେ ଫୁଲହାରଟିକୁ ଖୋଜିବାରୁ ତାଙ୍କ ସ୍ତ୍ରୀ ସେହିଟିକୁ ମୁଣ୍ଡରୁ କାଢ଼ି ଦେଇଦେଲେ । ପଣ୍ଡା ଫୁଲହାରଟି ନେଇ ଶୀଘ୍ର ଚାଲିଗଲେ ।

ରାଜା ତ ଅବୁଝା । ଯଦି ବିଳମ୍ବ ହୁଏ ତେବେ ରାଗିଯିବେ । ରାଜା ରାଗିଗଲେ ଆଉ ରକ୍ଷା ନାହିଁ । ଏଣୁ ବଡ଼ପଣ୍ଡା ଅନ୍ୟ କେଉଁ-ଆଡ଼େ ଲକ୍ଷ୍ୟ ନ ରଖି ଏକା ନିଶ୍ୱାସରେ ରାଜାଙ୍କ ନିଅର ପାଖରେ ଯାଇ ହାଜର ହେଲେ । ସେ ରାଜାଙ୍କୁ ପ୍ରସାଦ, ପାଦୋଦକ ଓ ଫୁଲହାରଟି ଦେଲେ । ରାଜା ଭକ୍ତିର ସହିତ ପାଦୋଦକ ସେବନ କରି ହାରଟିକୁ ମୁଣ୍ଡରେ ଛୁଆଁଇଲେ । ପଣ୍ଡାଙ୍କ ସ୍ତ୍ରୀଙ୍କ ମୁଣ୍ଡରୁ ଗୋଟିଏ ବାଳ ସେହି ହାର ଦେହରେ ଲାଗି ଯାଇଥିଲା । ପଣ୍ଡା କିନ୍ତୁ ଏହା ଦେଖି ପାରି ନ ଥିଲେ । ବର୍ତ୍ତମାନ ରାଜାଙ୍କ ଦୃଷ୍ଟି ସେହି ବାଳଟିରେ ପଡ଼ିଗଲା । ସେ ରାଗରେ ଗର୍ଜିଉଠି କହିଲେ, 'ପଣ୍ଡା ! ତୁମେ ଠାକୁରଙ୍କ ପୂଜା ମାଟି କଲ । ସର୍ବନାଶ ହେବ । ଏହା କାହିଁକି କଲ ? ଶୀଘ୍ର ଉତ୍ତର ଦିଅ, ନଚେତ୍ ମୁଣ୍ଡକାଟ ହେବ ।'

ରାଜାଙ୍କ କଥା ଶୁଣି ପଣ୍ଡା ଭୟରେ ଥର ଥର କହିଲେ, "ମଣିମା ! ମୋର ଅପରାଧ କଅଣ ?"

ରାଜା ଆହୁରି ଗର୍ଜିଉଠି କହିଲେ, "ଏ ଛଡ଼ାହାରକୁ ବାଳ ଆସିଲା କେଉଁଠୁ ? ଏତକ ଲକ୍ଷ୍ୟ କରି ପାରିଲ ନାହିଁ । ମାରାଫୁଲରେ ଠାକୁରଙ୍କ ପୂଜା କଲ ?"

ପଣ୍ଡାଙ୍କୁ କିଛି ବୁଦ୍ଧି ବାଟ ଦିଶିଲା ନାହିଁ । ତାଙ୍କ ପାଟି ଖନ ମାରିଗଲା । କୌଣସିମତେ ପାଟିରୁ ବାହାରିପଡ଼ିଲା, "ମଣିମା ! ଠାକୁରଙ୍କ ମୁଣ୍ଡରେ ବାଳ ଅଛି । ସେହି ବାଳ ଲାଗିଥିବ !"

ଏଥିରେ ରାଜା ଆହୁରି ରାଗିଯାଇ କହିଲେ, "ମୂର୍ଖ ବ୍ରାହ୍ମଣ ! କଳିଙ୍ଗ ସମ୍ରାଟଙ୍କୁ ଉପହାସ କରୁଛ ? କାଲି ଯଦି ଠାକୁରଙ୍କ ମୁଣ୍ଡରେ ବାଳ ନ ଦେଖାଅ, ତେବେ ଉପଯୁକ୍ତ ଶାସ୍ତି ପାଇବ । ଚାଲିଯାଅ ଏଠୁଁ ।"

ପଣ୍ଡାଙ୍କ ମୁହଁ କଳା ପଡ଼ିଗଲା । ସେ ଚୁପ୍ ହୋଇ ଘରକୁ ଫେରି-ଆସିଲେ । ରାତି ପାହିଲେ ତାଙ୍କର ମୁଣ୍ଡ କାଟ ହେବ । ଏ କଥା ଶୁଣି ସ୍ତ୍ରୀ, ପୁଅ କନ୍ୟାଙ୍କର ଖିଆ ପିଆରେ କି ଆଉ ମନ ଲାଗେ ? ସମସ୍ତେ କାନ୍ଦିବାକୁ ଲାଗିଲେ । ରାତି ବେଶୀ ହେବାରୁ ସେମାନେ ଉପବାସରେ ଶୋଇପଡ଼ିଲେ । ପଣ୍ଡା ବହୁତ ରାତି ପର୍ଯ୍ୟନ୍ତ ଅନିଦ୍ରା ରହି ମହାପ୍ରଭୁଙ୍କୁ ଜଣାଉଥାନ୍ତି, "ହେ ଜଗନ୍ନାଥ ! ରକ୍ଷା କର । ମୋର ଛୁଆପିଲା ଅନାଥ ହୋଇଯିବେ ।"

ରାତି ପାହାନ୍ତାକୁ ପଣ୍ଡାଙ୍କୁ ଟିକିଏ ନିଦ ଆସିଗଲା । ସେ ସ୍ୱପ୍ନରେ ଦେଖିଲେ, ଠାକୁର କହୁଛନ୍ତି, "ପଣ୍ଡା, ବ୍ୟସ୍ତ ହୁଅନା । କାଲି ସକାଳୁ ରାଜାଙ୍କୁ ଡାକି ଆଣି ଦେଖାଇ ଦିଅ, ମୋ ମୁଣ୍ଡରେ ବାଳ ଅଛି । ତୁମ କଥା କଅଣ ମିଛ ହେବ ? ଉଠ, ଆଉ ଶୁଅ ନାହିଁ । ରାତି ପାହିଲାଣି । ପ୍ରାତଃକର୍ମ ସାରି ରାଜବାଟୀକୁ ଯାଅ ।"

ଏପରି ସ୍ୱପ୍ନ ଦେଖି ପଣ୍ଡାଙ୍କ ନିଦ ଭାଙ୍ଗିଗଲା । ଆଉ କାଳବିଳମ୍ବ ନ କରି, ସେ ସଙ୍ଗେ ସଙ୍ଗେ ସ୍ନାନ ତର୍ପଣ ପ୍ରଭୃତି ଶେଷ କଲେ । ସେତେବେଳକୁ ସକାଳ ହୋଇଯାଇଥାଏ । ପଣ୍ଡା ତର ତର ହୋଇ ଶ୍ରୀମନ୍ଦିରକୁ ଧାଇଁଲେ । ମହାପ୍ରଭୁଙ୍କ ପହଡ଼ ପିଠାଇ ଦେଖିଲେ ଯେ, ଠାକୁରଙ୍କ ମୁଣ୍ଡରେ ବାଳ ହୋଇଛି । ଗୋଟିଏ ଦୁଇଟି ନୁହେଁ, ଏକାବେଳକେ ଗୋଛାଏ ବାଳ । ଅତି ସୁନ୍ଦର ଭାବରେ ସାଉଁଳା ହୋଇ ତାହା ଝୁଲୁଅଛି । ଏହା ଦେଖି ପଣ୍ଡା ଭକ୍ତିରେ ଗଦ୍ ଗଦ୍ ହୋଇ ପ୍ରଭୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ ।



ତତ୍‌କ୍ଷଣାତ ବଡ଼ପଣ୍ଡା ନଅରକୁ ଯାଇ ରାଜାଙ୍କୁ ଡାକିଆଣି ଏହା ଦେଖାଇଦେଲେ । ରାଜା କିନ୍ତୁ ଅବିଶ୍ୱାସ କରି ଠାକୁରଙ୍କ ମୁଣ୍ଡରୁ ମେଞ୍ଚାଏ ବାଳ ଉପାଡ଼ି ଆଣିଲେ । ବାଳ ଉପୁଡ଼ି ଆସିଲା ସିନା, କିନ୍ତୁ ତା ମୂଳରୁ ରକ୍ତ ଧାର ଧାର ହୋଇ ବହିଗଲା । ରାଜା ନିଜର ଭୁଲ ବୁଝି ପାରିଲେ । ଠାକୁରଙ୍କୁ ପ୍ରଣାମ କରି କ୍ଷମା ଭିକ୍ଷା କଲେ ।

# ଖୀରଜା ମନ୍ଦିର

## ଭେଟବର ଓ ଲଣ୍ଡା ଦେଉଳ (୧)

ଯମଦଗ୍ନି ଋଷିଙ୍କ ପୁତ୍ର ପର୍ଶୁରାମ ଭାରତସାରା ବୁଲି ଆସିଲେ । ଏକୋଇଶ ଥର ଦୁଷ୍ଟ କ୍ଷତ୍ରିୟମାନଙ୍କୁ ଧ୍ୱଂସ କରିବା ପରେ ସେ ଉତ୍କଳର ନାନା ତୀର୍ଥ ଭ୍ରମଣ କରିଥିଲେ । ଉତ୍କଳର ଯେଉଁ ସ୍ଥାନ ବର୍ତ୍ତମାନ ଝଙ୍କଡ଼ ନାମରେ ବିଖ୍ୟାତ, ସେତେବେଳେ ତାହାର ନାମ କେହି ଜାଣି ନ ଥିଲେ । 'ଚନ୍ଦ୍ରଭାଗା' ନାମକ ଗୋଟିଏ ଶ୍ରେଷ୍ଠ ନଦୀ ସେହି ଅଞ୍ଚଳରେ ପ୍ରବାହିତ ହେଉଥିଲା । ବର୍ତ୍ତମାନ ତାହା ଆଉ ଦେଖିବାକୁ ମିଳେ ନାହିଁ ।

ତୀର୍ଥ ଭ୍ରମଣ କାଳରେ ପର୍ଶୁରାମ ସେହି ଚନ୍ଦ୍ରଭାଗା ନଦୀ କୂଳରେ ଥିବା ବରଗଛ ମୂଳେ ନିଜର ଧନୁ ଓ ଫାର୍ଶୀ ଥୋଇଦେଇ ଗାଧୋଇବାକୁ ବାହାରି ଗଲେ । ସେ ଗାଧୋଇ ସାରି ଗଛ ମୂଳକୁ ଫେରିଆସି ଯାହା ଦେଖିଲେ, ସେଥିରେ ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲେ ନାହିଁ । କାରଣ, ତାଙ୍କର ଧନୁ ଯେଉଁଠାରେ ଥୁଆହୁଏ, ସେ ସ୍ଥାନର ମାଟି ଦବିଯାଏ; ମାତ୍ର ଚନ୍ଦ୍ରଭାଗା କୂଳର ସେହି ବରଗଛ ମୂଳ ମାଟି ଦବି ନ ଥିଲା । ତେଣୁ ସେ ଧ୍ୟାନରେ ବସି ଜାଣିପାରିଲେ ଯେ, ସେହି ସ୍ଥାନରେ 'ଦୁର୍ଗାଦେବୀ' ପୋତି ହୋଇ ପଡ଼ିଛନ୍ତି ଏବଂ ସେଥିପାଇଁ ସେ ସ୍ଥାନର ମାଟି ଦବି ନାହିଁ ।

ଏହା ବୁଝିପାରି ଦେବୀଙ୍କର ଦର୍ଶନ ପାଇବା ନିମିତ୍ତ ତାଙ୍କର ପ୍ରବଳ ଇଚ୍ଛା ହେଲା । ସେ ନିଜର ଧନୁ ସାହାଯ୍ୟରେ ସେ ସ୍ଥାନର ମାଟି ତାଡ଼ିବାକୁ ଲାଗିଲେ । ଅଳ୍ପ ମାଟି ଖୋଳିବା ପରେ ଗୋଟିଏ କଳା ମୁଗୁନି ପଥରର ମୂର୍ତ୍ତି ବାହାରିଲା । ପର୍ଶୁରାମ ତାଙ୍କୁ ପ୍ରଣାମ

କଲେ । ସେହି ବରଗଛ ମୂଳରେ ଦେବୀଙ୍କ ସହିତ ତାଙ୍କର ଭେଟ ହୋଇଥିଲା ବୋଲି ସେହି ଗଛକୁ 'ଭେଟବର' ବୋଲି କୁହନ୍ତି । ଏହି ଭେଟବର ଏବେ ମଧ୍ୟ ଅଛି । ଚନ୍ଦ୍ରଭାଗା ନଦୀ ବର୍ତ୍ତମାନ ନ ଥିଲେ ସୁଦ୍ଧା ଚନ୍ଦ୍ରଭାଗା ନାମରେ ଗୋଟିଏ ଜୋଡ଼ ସେଠାରେ ଆଜିକାଲି ଦେଖିବାକୁ ମିଳେ ।



ଉକ୍ତ ଭେଟବର ନିକଟରେ ଗୋଟିଏ କୁଡ଼ିଆ ତିଆରି କରି ପରଶୁରାମ ଦେବୀଙ୍କର ପୂଜା ଆରାଧନା କଲେ । ସେହି ଯୁଗରୁ ସେଠାରେ ଶାରଳା ଦେବୀଙ୍କର ପୂଜା କରାହୋଇ ଆସୁଅଛି ।

ଏହି ସ୍ଥାନର ନାମ 'ଝଙ୍କଡ଼' ହେବାର ଗୋଟିଏ କାରଣ ଅଛି । ଏହି ନାମଟି ଆଜିକାଲିର ନୁହେଁ, ଏହା ସେହି ଯୁଗର । ପରଶୁରାମଙ୍କ ଧନୁରେ ଘୁଙ୍ଗୁର ବନ୍ଧା ହୋଇଥିଲା । ଧନୁ ଧରି, ନାଚି ନାଚି ଯୁଦ୍ଧ କଲାବେଳେ ଝମ୍ ଝମ୍ ଶବ୍ଦ ହେବ ବୋଲି ସେ ସେଥିରେ ଘୁଙ୍ଗୁର ବାନ୍ଧିଥିଲେ । ସେହି ଧନୁ ଦ୍ୱାରା ସେ ନଦୀ କୂଳର ବାଲିଗରଡ଼ା ପୃଥ୍ୱୀ ମାଟି ଖୋଳିବା ବେଳେ ତାହା ଝମ୍ ଝମ୍ କଡ଼୍ କଡ଼୍ ଶବ୍ଦ ହେଉଥିଲା । ଏଥିପାଇଁ ସେ ଉକ୍ତ ସ୍ଥାନର ନାମ 'ଝମ୍‌କଡ଼୍'

ଦେଇଥିଲେ । ସେହି ଝିଅ୍‌କଣ୍ଠ୍‌ରୁ କ୍ରମେ ତାହାର ନାମ 'ଝଙ୍କଡ଼' ହୋଇଅଛି ।

ସେତେବେଳେ ସେହି ସ୍ଥାନ ବଣ ଜଙ୍ଗଲରେ ପୂରିଥିଲା । କ୍ରମେ ସେ ଅଞ୍ଚଳରେ ଲୋକେ ବସବାସ କଲେ । ସେଠାର ରାଜା ଦେବୀଙ୍କ ପାଇଁ ମନ୍ଦିର ତୋଳାଇ ସେବାପୂଜାର ବ୍ୟବସ୍ଥା କରିଦେଲେ ।

ଦିନ ପରେ ଦିନ ଗଡ଼ି ଚାଲିଲା । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ଯୁଦ୍ଧରେ ମଲେ । ବଙ୍ଗଳାର ନବାବ ସୁଲେମାନଙ୍କ ସେନାପତି କଳାପାହାଡ଼ ଓଡ଼ିଶାର ମନ୍ଦିର ଓ ମୂର୍ତ୍ତି ସବୁ ଧ୍ୱଂସ କରିବାକୁ ଆସିଲେ । ସେ ଶାରଳା ଦେବୀଙ୍କ ମନ୍ଦିର ଦ୍ୱାର ନିକଟରେ ପହଞ୍ଚିଲେ । ଦେବୀ ଏହା ଜାଣିପାରି ଗୋଟିଏ ସ୍ତ୍ରୀ ରୂପ



ଧାରଣ କଲେ । ସେ ମାଠିଆଟିଏ ଧରି ପାଣି ଆଣିବାକୁ ଯିବା ବାହାନାରେ ମନ୍ଦିରରୁ ବାହାରି ପଡ଼ିଲେ । ଦେବୀ ମାଠିଆଟିକୁ ପାଣି-

କୂଳରେ ଥୋଇଦେଇ ପାଣିରେ ବୁଡ଼ି ରହିଲେ । ସେଥିପାଇଁ ସେକାଳର ଲୋକଙ୍କଠାରୁ ଶୁଣାଯାଏ—

"ଭଲ ଶାରଳାଣ୍ଟ ଭଲରେ,
କଳାପାହାଡ଼କୁ ଦୁଆରେ ବସାଇ, ଭଳ ପାଣି ଆଣି ଗଲରେ ।"

କଳାପାହାଡ଼ ଅପେକ୍ଷା କରି କରି ଶେଷରେ ବିରକ୍ତ ହୋଇ ସେ ମନ୍ଦିରର ଦଧିନଉତି ଭାଙ୍ଗି ମନ୍ଦିରଟିକୁ ଲଣ୍ଡା କରିଦେଲା । ସେହି ଭଙ୍ଗା ଦେଉଳ ଆଜିସୁଦ୍ଧା ଅଛି । ତାର ନାମ 'ଲଣ୍ଡା ଦେଉଳ ।'

ଦେବୀ ପାଣି ପାଇଁ ଆସି ଚନ୍ଦନ ପୋଖରୀରେ ବୁଡ଼ିରହିଲେ । ପରେ ସେ ବଡ଼ପଣ୍ଡାଙ୍କୁ ସ୍ୱପ୍ନରେ କହିଲେ, "ମୋର ମନ୍ଦିର ଅପବିତ୍ର ହେଲା । ମୁଁ ଆଉ ସେଠାରେ ରହିବି ନାହିଁ । ନୂଆ ମନ୍ଦିର ତୋଳାଅ, ମୁଁ ସେଠାକୁ ଯିବି ।" ସେଠାର ସାମନ୍ତ ରାଜା ବଡ଼ପଣ୍ଡାଙ୍କଠାରୁ ସ୍ୱପ୍ନକଥା ଶୁଣିବା ପରେ ଗୋଟିଏ ଘରଳଘର ତୋଳାଇ ସେଥିରେ ଦେବୀଙ୍କର ପୂଜା କରାଇଲେ । ତାପରେ ନୂଆ ଦେଉଳ ତିଆରି ହୋଇଅଛି ।

ସେହି ଦେବୀଙ୍କର ଆରାଧନା କରି ଭକ୍ତ ଶାରଳା ଦାସ, ଭକ୍ତ ଜୀବନ ଦାସ, କଣ୍ଠାବେଢ଼ ରଜା ଓ ବଣ୍ଡ ରଜା ପ୍ରଭୃତି ବିଖ୍ୟାତ ହୋଇଅଛନ୍ତି ।

## ଲଙ୍ଗଳ କଣ୍ଢି ଧରି ଧରି ମୁନି ହେଲେ (୨)

ପୁରୁଣା କାଳର କଥା । ଉଜ୍ଜୟିନୀରେ ବିକ୍ରମାଦିତ୍ୟ ରାଜତ୍ୱ କରୁଥାନ୍ତି । ସେଠାରେ ଜଣେ ମୂର୍ଖ ବ୍ରାହ୍ମଣ ଥିଲେ । ତାଙ୍କର ନାମ ଯେପରି, ରୂପ ମଧ୍ୟ ସେହିପରି । ଲୋକେ ତାଙ୍କୁ କାଳିଆ ନନା ବୋଲି ଡାକୁଥିଲେ । ସେହି ମୂର୍ଖ 'କାଳିଆ ନନା' ପୁଣି ହେଲେ ମହାପଣ୍ଡିତ 'କାଳିଦାସ', କେବଳ ସରସ୍ୱତୀଙ୍କ ଦୟାରୁ । ସେହିପରି ଆମ୍ ଓଡ଼ିଶାର ଜଣେ ଗଜମୂର୍ଖଙ୍କ ପ୍ରତି ସେହି ଦେବୀଙ୍କର ଦୟା ହୋଇଥିଲା । ସେ ଲଙ୍ଗଳ ଧରି ହଳ କରୁ କରୁ ଓଡ଼ିଶାର ଆଦିକବି ହେଲେ !

ଦିବ୍ୟସିଂହ ଦେବ ରାଜତ୍ୱ କରୁଥାନ୍ତି । ଠିକ୍ ସେହି ସମୟରେ ସେ ମହାତ୍ମା ଜନ୍ମଗ୍ରହଣ କରିଥିଲେ । ତାଙ୍କର ନାମ ଥିଲା 'ସିଦ୍ଧେଶ୍ୱର ପରିଡ଼ା' । କୃଷି କାର୍ଯ୍ୟ ତାଙ୍କର ଜୀବିକା । ପିଲାଦିନେ ସେ ଚାଟଶାଳୀ ମାଡ଼ି ନ ଥିଲେ । ଏଣୁ ଅକ୍ଷର କଅଣ, ତାଙ୍କୁ ଜଣା ନ ଥିଲା । ହଳ ଲଙ୍ଗଳ ନେଇ କୃଷି କରିବା ଥିଲା ତାଙ୍କର ନିତ୍ୟ କାର୍ଯ୍ୟ ।

କଟକ ଜିଲ୍ଲା ତିର୍ତ୍ତୋଲ ଥାନାରେ ଝଙ୍କଡ଼ ବୋଲି ଗୋଟିଏ ସ୍ଥାନ ଅଛି । ଶାରଳା ଦେବୀଙ୍କ ମନ୍ଦିର ପାଇଁ ସେ ସ୍ଥାନ ବିଖ୍ୟାତ । ମନ୍ଦିରଠାରୁ ଡାକେ ବାଟ ଦକ୍ଷିଣକୁ ଗଲେ ଦିଲ ମିଳିବ ଗୋଟିଏ ଗାଁ ପଡ଼େ । ନାଁ ତାର 'କାଳନାଗ' । ସେହି ଗାଁରେ ସିଦ୍ଧେଶ୍ୱର ପରିଡ଼ାଙ୍କର ଘର । ସେ ଗଜମୂର୍ଖ ହେଲେ ମଧ୍ୟ ଶାରଳାଙ୍କଠାରେ ତାଙ୍କର ଅତୁଳା ଭକ୍ତି ଥାଏ । ଦିନର ସବୁ କାମ ଶେଷକରି ସନ୍ଧ୍ୟା ବେଳକୁ ସେ ପ୍ରତ୍ୟହ ଦେବୀଙ୍କ ମନ୍ଦିରକୁ ଯାଆନ୍ତି । ମନ୍ଦିରରେ ସନ୍ଧ୍ୟା ଆଳତି ଦର୍ଶନ ପୂର୍ବକ ଭକ୍ତି ସହକାରେ ଦେବୀଙ୍କୁ ପ୍ରଣାମ କରି ଘରକୁ ଫେରନ୍ତି ।

ସାଧାରଣତଃ ଯେଉଁ ଲୋକର ଯାହା ଲୋଡ଼ା ଥାଏ, ସେଥିପାଇଁ ସେ ଦେବାଦେବୀଙ୍କ ନିକଟରେ ଅଳି କରିଥାଏ । ପାଠ ପଢ଼ୁଆ ପିଲାଏ ପାଠ ପାଇଁ ଅଳି କରନ୍ତି । ଯାହାର ଧନ ଦରକାର, ସେ ଧନ ମାଗେ । କିଏ ସନ୍ତାନ ମାଗି ଠାକୁରଙ୍କୁ ଜଣାଏ । କିଏ ଭଲ ବୁଦ୍ଧି ମାଗେ । ଯାହାର ଜମି ଦରକାର, ସେ ଜମି ମାଗେ । କିଏ ରୋଗ ଭଲ ହେବା ପାଇଁ ଜଣାଏ । କିଏ ମକଦ୍ଦମାରେ ଜୟ କରିବାକୁ ଜଣାଏ । ଚାଷୀମାନେ ଭଲ ଫସଲ ହେବାକୁ ଜଣାନ୍ତି । ଏହିପରି ସମସ୍ତେ ନିଜ ନିଜର ଗୁହାରି ଜଣାଇ ଘରକୁ ଫେରନ୍ତି । ପଣ୍ଡିତମାନେ କେତେ ସ୍ତବ, ସ୍ତୋତ୍ର ପାଠ କରନ୍ତି । କିଏ କେତେ ପ୍ରାର୍ଥନା କରନ୍ତି ! ଆମ ସିଦ୍ଧେଶ୍ୱର ତ ଅକ୍ଷର ଚିହ୍ନି ନାହାନ୍ତି । ସ୍ତବ, ସ୍ତୋତ୍ର ଅବା ଜାଣିବେ କେଉଁଠୁ ? ସେ କହନ୍ତି, 'ମା ! ମୋର କିଛି ଲୋଡ଼ାନାହିଁ' । ତାଙ୍କର ସ୍ତୋତ୍ର ହେଉଛି, "ମା, ମା ! ଅଭୟା, ତୋର ଇଚ୍ଛା ।" ଅନ୍ୟମାନଙ୍କର ଭକ୍ତି ଥାଏ କି ନା, ତାହା ସେହିମାନଙ୍କୁ ଜଣା । ମାତ୍ର ସିଦ୍ଧେଶ୍ୱର 'ମା, ମା' ଡାକିବାବେଳେ ଆଖିରୁ ତାଙ୍କର ଲୁହ ବହି ଯାଉଥିବାର ସମସ୍ତେ ଦେଖନ୍ତି । ସେମାନେ ଥଟ୍ଟାକରି କହନ୍ତି, 'ସିଦ୍ଧିଆ ତ ଭକ୍ତିରେ ବୋହି ପଡ଼ୁଛି' ।

ତାଙ୍କର ଏପରି ଅଟଳ ଭକ୍ତିରେ ଦେବୀ ସନ୍ତୁଷ୍ଟ ହୋଇ ତାଙ୍କୁ ଅନେକ ଥର ସ୍ୱପ୍ନରେ କହିଲେ, "ତୁ ମହାଭାରତ ଲେଖ" । ସେ ସେହି ସ୍ୱପ୍ନରେ ଦେବୀଙ୍କୁ ଉତ୍ତର ଦିଅନ୍ତି, "ମା ! ମୁଁ ତ ପାଠ ପଢ଼ି ନାହିଁ, କିମ୍ବା ମହାଭାରତ କଅଣ ଜାଣି ନାହିଁ, ଲେଖିବି କିପରି ?"

ଦେବୀ ତାଙ୍କୁ ସାହସ ଦେଇ କହନ୍ତି, "ତୁ ଲେଖିଲେ ଧଇଲେ ସବୁ ଆପେ ଆପେ ହୋଇଯିବ । ସେଥିପାଇଁ ଚିନ୍ତା କରନା ।"

ମାତ୍ର ତହିଁ ପରଦିନ ସିଦ୍ଧେଶ୍ୱର ପୁଣି ଚାଷ ଧନ୍ଦାରେ ଲାଗି-ଯାଆନ୍ତି । ସ୍ୱପ୍ନ କଥା ଭାବିବାକୁ ତାଙ୍କୁ ବେଳ ଅବା କାହିଁ ? ଏହିପରି କେତେଥର ସେ ସ୍ୱପ୍ନ ଦେଖିଲେ; କିନ୍ତୁ ସବୁଥର ଭୁଲି ଯାଆନ୍ତି ।

ଦିନେ ଚାହାଣ୍ଡୀ ସମ୍ମୁଖରେ ଦେବୀ ତାଙ୍କୁ ପୁଣି ସେହି ଆଦେଶ କଲେ । ଘଣ୍ଟାକ ପରେ ରାତି ପାହିଲା । ସିଦ୍ଧେଶ୍ୱର ନିଦରୁ ଉଠିଲେ । ଏଥର ମଧ୍ୟ ପୂର୍ବ ପରି ଭୁଲିଗଲେ । ଦେବୀ ଭାବିଥିଲେ, ସେ ନିଦରୁ ଉଠିବାର ଠିକ୍ ପୂର୍ବରୁ ମୁଁ ଆଦେଶ ଦେଇଛି । ଏଥର କେବେହେଲେ ଭୁଲି ନ ଥିବ ! ମାତ୍ର ଫଳ କିଛି ହେଲା ନାହିଁ । ସବୁଦିନ ପରି ସେଦିନ ମଧ୍ୟ ସେ ହଳ କରିବାକୁ ଚାଲିଗଲେ । ଦେବୀ ଆଉ ସମ୍ଭାଳି ହୋଇ ରହି ପାରିଲେ ନାହିଁ । ମନୁଷ୍ୟ ରୂପ ଧରି ସେହି ହଳ କିଆରୀକୁ ଗଲେ ।

ସିଦ୍ଧେଶ୍ୱର ଦେଖିଲେ ଯେ, ଜଣେ ସ୍ତ୍ରୀ ଲୋକ କଳାଶାଢ଼ୀ ପିନ୍ଧି ତାଙ୍କୁ ଡାକୁଛନ୍ତି । ସେ ହଳ ବନ୍ଦ କରି ତାଙ୍କ ପାଖକୁ ଗଲେ ।



ଦେବୀ କହିଲେ, "ଦେଖ୍, ମୁଁ ତୋତେ ବାରମ୍ବାର ସ୍ୱପ୍ନରେ କହୁଛି, ମାତ୍ର ତୁ ଭୁଲି ଯାଉଛୁ । ବର୍ତ୍ତମାନ ହଳ ବନ୍ଦ କରି ଘରକୁ ଯାଅ ଏବଂ ଲେଖା ଆରମ୍ଭ କର ।"

'ହଉ' କହି ସିଦ୍ଧେଶ୍ୱର ହଳ ଫିଟାଇବାକୁ ବାହାରିଲେ । ତାଙ୍କ ମନକୁ କଅଣ ଆସିଲା କେଜାଣି, ସେ ପଛକୁ ଲେଉଟି ଚାହିଁବା-ବେଳକୁ ଆଉ ସେ ସ୍ତ୍ରୀ ଲୋକଙ୍କୁ ଦେଖିଲେ ନାହିଁ । ତେଣୁ ତାଙ୍କର ପୂର୍ଣ୍ଣ ବିଶ୍ୱାସ ହେଲା ଯେ, ସେ ନିଶ୍ଚୟ ଶାରଳା ଠାକୁରାଣୀ ।

ସେହି ଦିନଠାରୁ ସିଦ୍ଧେଶ୍ୱର 'ମହାଭାରତ' ଲେଖା ଆରମ୍ଭ କଲେ । ଏହା ପୂର୍ବରୁ କୌଣସି ପୁରାଣ-ଶାସ୍ତ୍ର ଓଡ଼ିଆରେ ଲେଖା ହୋଇ ନ ଥିଲା । ସେହି ଲେଖାରେ ତାଙ୍କର ମନ ଏତେ ଲାଗି-ଗଲା ଯେ, ସେ ଗୃହବାସ ଛାଡ଼ି ସବୁବେଳେ ବସି ଲେଖିଲେ ।

ସିଦ୍ଧେଶ୍ୱରଙ୍କର ଲେଖିବା ଏକ ଅତି ବିଚିତ୍ର କଥା । ଲେଖନ ଧରିବା ତ ଦୂରର କଥା, ତାଙ୍କ ଜୀବନରେ ପୂର୍ବରୁ କେବେ ସେ ତାହା ଦେଖିଥିଲେ କି ନା ସନ୍ଦେହ । ସିଦ୍ଧେଶ୍ୱର ନିଜ ବାଡ଼ିରୁ ଗୁଡ଼ାଏ ତାଳପତ୍ର କାଟି ଆଣିଲେ ଏବଂ ଲେଖନଟିଏ ମାଗି ଆଣିଲେ । ଯେତେବେଳେ ସେ ପ୍ରଥମ କରି ତାକୁ ସବୁ ଧରି ବସିଲେ, ସେତେବେଳେ ତାଙ୍କ ହାତ ଆପେ ଆପେ ଚାଲିଲା । ସେ ଯାହା ସବୁ ମନରେ ଭାବିଲେ, ତାହା ଲେଖା ହୋଇଗଲା । ଏହାବେଳକେ ତାଙ୍କୁ ଲେଖା ଓ ପଢ଼ା ଆସିଗଲା ।

ସେ ଯାହା ଲେଖିଲେ, ସବୁ ନିଜେ ପଢ଼ିଲେ । ପରେ ତାହା ଅନ୍ୟମାନଙ୍କୁ ପଢ଼ି ଶୁଣାଇଲେ । 'ଗଜମୂର୍ଖ ସିଦ୍ଧିଆ କଅଣ ସବୁ ଲେଖିଛି ଏବଂ ପଢ଼ି ଶୁଣାଉଛି' ବୋଲି ଶୁଣିବାକୁ ଅନେକ ଲୋକ ଆସି ରୁଣ୍ଡହେଲେ । ମାତ୍ର ଶୁଣିବା ପରେ ସେମାନେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲେ ନାହିଁ । ସେହି ଲେଖା ସବୁ ଅନ୍ୟ କିଛି ନୁହେଁ, 'ମହାଭାରତ' । ଏଥର ଲୋକେ କଥାବାର୍ତ୍ତା ହେଲେ, "ସିଦ୍ଧିଆ ତ ଗଜମୂର୍ଖଟାଏ, ତାକୁ ପୁଣି ଲେଖାପଢ଼ା ଶିଖାଇଲା କିଏ ? ସେ ପୁରାଣ କଥା ଅବା ଜାଣିଲା କେଉଁଠୁ ?"

ଏଣିକି ସିଦ୍ଧେଶ୍ୱର ଆଉ ଘରେ ରହିବାକୁ ଭଲ ପାଇଲେ ନାହିଁ । ଯେଉଁଠାରେ ଶାରଳା ଠାକୁରାଣୀଙ୍କର ପୁରୁଣା ଦେଉଳ ଥିଲା, ତାର ପାଖ ବଉଳ ଗଛ ମୂଳେ ବସି ସେ ଲେଖିଲେ । କେତେବେଳେ ଅବା ଲେଖା ବନ୍ଦକରି ଶାରଳାଙ୍କର ଧ୍ୟାନ, ସ୍ତୁତି, ଭଜନ ଓ ଜପ ଇତ୍ୟାଦି କରିବାରେ ଲାଗିଲେ । ସେହିଠାରେ ଦିନରାତି ସବୁବେଳେ ପଡ଼ିରହିଲେ, ଘରକୁ ଗଲେ ନାହିଁ । କଣ୍ଠରେ ଥାଇ ଠାକୁରାଣୀ ସରସ୍ୱତୀ ତାଙ୍କୁ ମହାଭାରତ କହିଦିଅନ୍ତି ଏବଂ ତାଙ୍କ ହାତକୁ ଚଳାଇ



ଦିଅନ୍ତି । ସେ ବସି ପତ୍ର ଓ ଲେଖନ ଧରୁ ଧରୁ ଲେଖା ଆପେ ଆପେ ହୋଇଯାଏ । ଏହିପରି ଲେଖି ଲେଖି କେତେ ଦିନରେ ମହାଭାରତ ଲେଖା ଶେଷ ହୋଇଗଲା ।

କ୍ରମେ ସିଦ୍ଧେଶ୍ୱର ଶାରଳାଙ୍କର ପ୍ରଧାନ ଭକ୍ତ ହୋଇ-ପାରିଲେ । ତେଣୁ ସେହି ଗ୍ରନ୍ଥରେ ସେ ନିଜକୁ ଶାରଳାଦାସ ବୋଲି ପରିଚୟ ଦେଲେ । ପରେ ସେ 'ବିଲଙ୍କା ରାମାୟଣ' ରଚନା

କଲେ । 'ମହାଭାରତ' ଓ 'ବିଲଙ୍କା ରାମାୟଣ' ଗ୍ରନ୍ଥ ଦୁଇଟି ଲେଖା ସରିବା ବେଳକୁ ଶାରଳା ଓଡ଼ିଶାର ଆଦ୍ୟକବି ବୋଲି ସବୁଆଡ଼େ ଖ୍ୟାତିଲାଭ କରି ସାରିଥିଲେ । ସେତେବେଳକୁ ତାଙ୍କର ବୟସ ବେଶି ହୋଇ ଯାଇଥିଲା । ତେଣୁ ସେ ଆଉ ଲେଖା ଲେଖି ନ କରି ସବୁବେଳେ ଦେବୀଙ୍କର ଭଜନ ଓ ମହିମା କୀର୍ତ୍ତନରେ କାଳ କାଟିବାରେ ଲାଗିଲେ ।

ଦେବୀଙ୍କର ସ୍ତୁତି ବିନା ତାଙ୍କୁ ଆଉ କିଛି ଭଲ ଲାଗୁ ନ ଥାଏ । ଟିକିଏ ବେଳ ନଷ୍ଟ ନ କରି ସେ ସବୁବେଳେ ଭଜନ କୀର୍ତ୍ତନ ଚଳାଇଥାନ୍ତି । ଏଣିକି ଲୋକେ ତାଙ୍କୁ କବି ନ କହି ଭକ୍ତ ବା ମୁନି ବୋଲି କହିଲେ ।

ଦିନେ ଅଧରାତିରେ ସେ ଉଠି ପଡ଼ିଲେ ଏବଂ କହିଲେ, "ମା ! ମୋର ତ ଆୟୁ ଶେଷ ହେଲାଣି । ଆଉ କେଇଟା ଦିନ ଅବା ତୁମର ନାମ କୀର୍ତ୍ତନ କରିବି ? ଆଗରୁ ଭଲା ଏଥିରେ ମନ ଦେଇଥାନ୍ତି ! ତୁମେ ତ ମୋର ବହୁତ ସମୟ ନଷ୍ଟ କରାଇଦେଲ । ମୋତେ ଏ ପୁରାଣ ଲେଖାରେ କାହିଁକି ମତାଇ ଦେଲ ? ସେଗୁଡ଼ାକ ଲେଖି କିଛି ଲାଭ ହେଲା ନାହିଁ । ମୋର ଭାରି ମନକଷ୍ଟ ହେଉଛି । ସେହି ପୁରାଣ-ଗୁଡ଼ିକୁ ପୋଡ଼ି ନଷ୍ଟ କରିଦେଲେ ଯାଇ ମୋ ମନ ଶାନ୍ତ ହେବ ।" ଏହା କହି ନିଆଁ ଜାଳିଲେ । ପୋଥିଗୁଡ଼ିକୁ ସେଥିରେ ପକାଇବାକୁ ନେଉଛନ୍ତି, ଏତିକିବେଳେ ତାଙ୍କ ହାତରୁ କିଏ ତାହା ଛାଣିନେଲା । ମୁନି ଆଶ୍ଚର୍ଯ୍ୟ ହୋଇଗଲେ । କେହି ତ ନାହିଁ ! ତେବେ ପୋଥି ନେଲା କିଏ ? ଏହିପରି ଭାବୁ ଭାବୁ ତାଙ୍କୁ ନିଦ ଆସିଗଲା ।

ଦେବୀ ସ୍ୱପ୍ନରେ କହିଲେ, "ତୁ ମୋ ପୁରାଣକୁ ନଷ୍ଟ କରିବୁ ନାହିଁ । ନାମ ଭଜନ କରି ତୁ ଯାହା ପାଇଥାନ୍ତୁ, ତୋତେ ତା ଠାରୁ ଅଧିକ ମିଳିବ । ଆଉ ଖଣ୍ଡେ 'ଚଣ୍ଡୀ ପୁରାଣ' ଲେଖିଦେ । ତା ପରେ ଅନ୍ୟ କିଛି ନ ଲେଖି ଖାଲି ଭଜନ କରୁଥା ।"

ଏଣେ ବଡ଼ପଣ୍ଡାଙ୍କୁ ସ୍ୱପ୍ନାଦେଶ ହୋଇବାରୁ, ତାଙ୍କ ଆରଦିନ ସେ ଦେବୀଙ୍କ ପିଣ୍ଡାଶାଢ଼ୀ ଭିତରୁ ପୁରାଣକୁ ନେଇ ସାଇତି ରଖିଲେ । ଠାକୁରାଣୀଙ୍କଠାରୁ ଆଦେଶ ପାଇ ମୁନି ମହାଶୟ 'ଚଣ୍ଡୀ ପୁରାଣ'ଟିକୁ ଶେଷ କରି ନାମ-ଭଜନରେ ମନ ଦେଲେ । ସେ ଗୋଟିଏ ଆଶ୍ରମ ତିଆରି କଲେ ଏବଂ ସେଠାରେ ସର୍ବଦା ଭଜନ କୀର୍ତ୍ତନ କରି ଦିନ କାଟିଲେ । ସେହି ଆଶ୍ରମ ଏବେ ମଧ୍ୟ ଅଛି । ତାହାର ନାମ 'ମୁନିଗୋସେଇଁ ମଠ' । ଏହି ମଠରେ ଶାରଳା ଦାସଙ୍କର ସମାଧି ଦେଖିବାକୁ ମିଳେ ।

## କାହ୍ନୁ ପୁଣି ଘୋଡ଼ା ହେଲା (୩)

ଏ ଦେଶ ମୁନି ଋଷିଙ୍କର ଜନ୍ମସ୍ଥାନ । କେଉଁ ପୂର୍ବ କାଳରେ ସେମାନେ ଜନ୍ମ ହୋଇ କଅଣ ସିଦ୍ଧି କରି ଯାଇଛନ୍ତି, ତାହା ଆଜିର ଲୋକ କେହି ଦେଖି ନାହାନ୍ତି, କେବଳ ପୁରାଣରୁ ପଢ଼ି ଜାଣୁଛନ୍ତି । ମାତ୍ର ପରବର୍ତ୍ତୀ କାଳରେ ସାଧୁ ଓ ସିଦ୍ଧପୁରୁଷମାନେ ଯେ ଆଦୌ ନ ଥିଲେ ବା ନାହାନ୍ତି, ଏହା ଠିକ୍ ନୁହେଁ ।

ଓଡ଼ିଶାର କେତେକ ସ୍ଥାନ ଏଭଳି ସିଦ୍ଧପୁରୁଷମାନଙ୍କ ପାଇଁ ବିଖ୍ୟାତ । ଜଗନ୍ନାଥ ଦାସ, ବଳରାମ ଦାସ ପ୍ରଭୃତି ପଞ୍ଚସଖା ବିଖ୍ୟାତ ସାଧୁ ଥିଲେ । ସେମାନେ ବହୁ ଅସାଧ୍ୟ ସାଧନ କରି ଯାଇଛନ୍ତି । ସେମାନଙ୍କ ସମାଧି ସ୍ଥାନ ଆଜିକାଲି ଗୋଟିଏ ଲେଖାଏଁ ତୀର୍ଥ ହୋଇ-ଥିବାର ଦେଖାଯାଏ । 'ନେମାଳ ମଠ' ଅଚ୍ୟୁତାନନ୍ଦ ଦାସଙ୍କ ସମାଧି ପାଇଁ ବିଖ୍ୟାତ । ସେହିପରି ହାଡ଼ିବନ୍ଧୁ ଦାସଙ୍କ ଯୋଗେ 'ଛତିଆ' ଗୋଟିଏ ତୀର୍ଥସ୍ଥାନ ହୋଇଅଛି । ସାଧୁ ଆର୍ତ୍ତତ୍ରାଣଙ୍କ ନିମନ୍ତେ ପୁରୀ ଜିଲାର 'ବେଲୁପଡ଼ା ମଠ' ପ୍ରସିଦ୍ଧି ଲାଭ କରିଅଛି ।

ସାଧୁ ଜୀବନ ଦାସ ଏହି ଶ୍ରେଣୀର ଜଣେ ସିଦ୍ଧ ମହାପୁରୁଷ । ତାଙ୍କର ଜନ୍ମସ୍ଥାନ ଝଙ୍କଡ଼ । ସେଠାରେ ଗୋଟିଏ ମଠ ସ୍ଥାପନ କରି ସେ ଜୀବନ୍ତ ସମାଧି ନେଇଥିଲେ । ଏକଦା ଝଙ୍କଡ଼ର ଶାରଳା ମନ୍ଦିରରେ ସେ ପରୀକ୍ଷକ ରୂପେ କାର୍ଯ୍ୟ କରୁଥିଲେ । ଶାରଳାଙ୍କଠାରେ ତାଙ୍କର ଅଟଳ ଭକ୍ତି ଥିଲା । ଶାରଳା ଦାସଙ୍କର ବହୁଦିନ ପରେ ଏହି ମହାତ୍ମା ଦେବୀଙ୍କର ପ୍ରଧାନ ଭକ୍ତ ହୋଇଥିଲେ ।

ସବୁବେଳେ ଦେବୀଙ୍କ ନାମ ଜପିବା ଛଡ଼ା ଜୀବନ ଦାସଙ୍କୁ ଅନ୍ୟ କିଛି ଭଲ ଲାଗୁ ନ ଥିଲା । ଭକ୍ତିଭାବରେ ସେ ଏତେ ଭୋଳ ହେଲେ ଯେ, ଖାଇବା ପିଇବା ପର୍ଯ୍ୟନ୍ତ ଭୁଲିଗଲେ । କ୍ରମେ ଲୋକମାନେ ତାଙ୍କୁ ଭକ୍ତ ବୋଲି ଜାଣିଗଲେ । ତାଙ୍କ ଚରିତ୍ର, ସତ

ବ୍ୟକ୍ତିଗତ ମିଛ ବାହାରେ ନାହିଁ । ଏହିପରି ଭାବରେ ସତ୍ୟର ସାଧନା ଓ ଭକ୍ତି ବଳରେ ତାଙ୍କର ବାକ୍‌ସିଦ୍ଧି ହେଲା । ଅର୍ଥାତ୍ ସେ ଯାହା କହୁଥିଲେ, ତାହା ନିଶ୍ଚିତ ଭାବରେ ଘଟୁଥିଲା ।

ସେହି ମହାତ୍ମାଙ୍କର ଏହି ନୂଆ ସିଦ୍ଧିଲାଭ କଥା ଚାରିଆଡ଼େ ପ୍ରଚାରିତ ହୋଇଗଲା । ଯଦି କେହି ଭୟଙ୍କର ରୋଗରେ ପଡ଼ି ନାନା ଚିକିତ୍ସାରେ ମଧ୍ୟ ଆରୋଗ୍ୟ ଲାଭ କରୁ ନ ଥିଲା, ତେବେ ସେ ଜୀବନ ଦାସଙ୍କ ପାଖକୁ ଆସି କାତର ଭାବରେ ଜଣାଉ ଥିଲା । ସାଧୁ ଯଦି ଦୟାକରି କହି ଦେଉଥିଲେ, 'ଯା, ମାଆଙ୍କ ଦୟାରୁ ଭଲ ହୋଇଯିବ' ତେବେ ରୋଗୀ ସଙ୍ଗେ ସଙ୍ଗେ ରୋଗମୁକ୍ତ ହୋଇ ଯାଉଥିଲା । ଏହିପରି ବହୁତ ରୋଗୀ ତାଙ୍କ ମଠ ପାଖରେ ପ୍ରତିଦିନ ପହଞ୍ଚୁଥିଲେ । କ୍ରମେ ବହୁ ଲୋକ ଆସି ସାଧୁଙ୍କୁ ନିଜ ନିଜର ଦୁଃଖ ଜଣାଇବାକୁ ଲାଗିଲେ । ଯଦି ବର୍ଷା ନ ହେଉଥିଲା, ତେବେ ଚାଷୀମାନେ ଆସି ବର୍ଷା ପାଇଁ ତାଙ୍କୁ ଅନୁରୋଧ କରୁଥିଲେ । ସେତେବେଳେ ସାଧୁ ଯଦି କହୁଥିଲେ ଯେ, 'ମାଆଙ୍କ ଦୟାରୁ ବର୍ଷା ହେଉ', ତେବେ ସଙ୍ଗେ ସଙ୍ଗେ ବର୍ଷା ହେଉଥିଲା ।

ଥରେ ସାଧୁ ଏକ ଦୂର ସ୍ଥାନକୁ ଯାଇଥିଲେ । ସେଠାରୁ ଫେରୁ ଫେରୁ ବିଳମ୍ବ ଘଟିଲା । ସନ୍ଧ୍ୟାବେଳକୁ ଶାରଳାଙ୍କ ମନ୍ଦିରରେ ପହଞ୍ଚିବାର କଥା । ବାଟରେ ମହାନଦୀ ପଡ଼ିଲା । ବର୍ଷା ଦିନ, ନଈ ବଢ଼ିଥାଏ । ସେ ଠିକ୍ ନଈ ବନ୍ଧକୁ ଉଠିବା ବେଳକୁ ନାଉରୀ ଡଙ୍ଗା ଛାଡ଼ିଦେଲା । ଡଙ୍ଗାରେ ଲୋକ ପୂରା ବୋଝେଇ ହୋଇ ଯାଉଥିଲେ । ସାଧୁ ନାଉରୀକୁ ପଛରୁ ଡାକିଲେ, ମାତ୍ର ସେ ଡଙ୍ଗା ଫେରାଇଲା ନାହିଁ । ନଈର ଅପର କୂଳରେ ପହଞ୍ଚି ପୁଣି ଫେରି ଆସିବାକୁ ଡଙ୍ଗାଟିକୁ ପ୍ରାୟ ଦୁଇ ଘଣ୍ଟାରୁ କମ୍ ସମୟ ଲାଗିବ ନାହିଁ । ଏଣେ ଦେବୀଙ୍କ ସନ୍ଧ୍ୟା ଆଳତି ସମୟ ନିକଟ ହୋଇଆସୁଛି । ସାଧୁ ବଡ଼ ଚଞ୍ଚଳ ହୋଇ ଉଠିଲେ । କଅଣ ଭାବି ସେ ଭୁସ୍ କରି ନଈ ଭିତରକୁ

ତେଲିଁପଡ଼ିଲେ ଏବଂ କହିଲେ, 'ମାଆଙ୍କ ଦୟାରୁ ମୁଁ ନଈ ପାରହେବି', ଏହା କହି କଠଉ ମାଡ଼ି ପାଣି ଉପରେ ଠକ୍ ଠକ୍ ଚାଲିଗଲେ । ତାଙ୍କ ଅନ୍ୟ କୂଳରେ ପହଞ୍ଚିବା ପୂର୍ବରୁ ସାଧୁ ନଈ ପାର ହୋଇଥିବା ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ସେତେବେଳେ ଇଂରେଜ ସରକାର ଦେଶ ଶାସନ କରୁ-ଥାନ୍ତି । ଜଣେ ନିରୀହ ଲୋକ ନାମରେ ପୋଲିସ୍ ଗୋଟିଏ ମିଥ୍ୟା ମୋକଦ୍ଦମା ଆଗତ କରିଥାଏ । ଲୋକଟିର ଗ୍ରାମବାସୀଙ୍କ ମଧ୍ୟରୁ ଅଧିକାଂଶ କପଟୀ । ସେମାନେ ତାକୁ ଭଲ ପାଉ ନ ଥାନ୍ତି । ତେଣୁ ସେହିମାନେ ହିଁ ପୋଲିସକୁ ଲାଞ୍ଚ ଦେଇ ଏ ମୋକଦ୍ଦମାଟି କରାଇ ଥାଆନ୍ତି । ସମନ ପାଇ ଲୋକଟି କଚେରୀରେ ହାଜର ହେଲା । ତାକୁ ସାକ୍ଷୀ ଆଣିବାକୁ ହାକିମ କହିବାରୁ ସେ ଭାବିଲା, 'ମୁଁ କାହାକୁ ଅବା ସାକ୍ଷୀ କରିବି ? ସାରା ଗାଁଟିରୁ ଅଧିକାଂଶ ତ ମୋର ବିବାଦୀ ଏବଂ ଅନ୍ୟମାନେ ମଧ୍ୟ ସେମାନଙ୍କ ଡରରେ ମୋ ସପକ୍ଷରେ କହିବେ ନାହିଁ । କଅଣ କରିବି ?' ଏହିପରି ଭାବି ଭାବି ଶେଷରେ ସେ ସାଧୁ ଜୀବନ ଦାସଙ୍କ ନାମ କହିଦେଲା । ସାଧୁଙ୍କ ପାଖକୁ ସାକ୍ଷୀ ନାମରେ ସମନ ଆସିଗଲା । ଲୋକଟି ଅବଶ୍ୟ ଆଗରୁ ସାଧୁଙ୍କୁ ସବୁ ଜଣାଇଥିଲା । ସାଧୁ ମଧ୍ୟ ତାକୁ ନିର୍ଭରେ ଜବାବ ଦେଇ କହି-ଥାଆନ୍ତି ଯେ, ମୋକଦ୍ଦମା ବିଚାର ଦିନ କଚେରୀକୁ ଯାଇ ସେ ନିଶ୍ଚୟ ସାକ୍ଷ୍ୟ ଦେବେ । ହେଲେ ତାରିଖଟି ତାଙ୍କର ମନେ ନ ଥାଏ ।

ଯେଉଁଦିନ ବିଚାର ତାରିଖ, ସେଦିନ ବିଚରା ଆସାମୀଟି କାନ୍ଦି କାନ୍ଦି ଆସି ସାଧୁଙ୍କୁ କହିଲା, "ଏ ଗରିବ ପ୍ରତି ଟିକିଏ ଦୟା କଲେ ନାହିଁ ! ଆଉ କି ରକ୍ଷା ଅଛି ? ପୋଲିସ୍ ନିଶ୍ଚୟ ମୋତେ ଜେଲଖାନାକୁ ବାନ୍ଧି ନେବ ।" ସେତେବେଳକୁ ସାଧୁ ଗୋଟିଏ ଭଙ୍ଗା କାନ୍ଥ ଉପରେ ବସି ଦାନ୍ତ ଘଷୁଥାନ୍ତି । କଚେରୀକୁ ଯିବା କଥା ଶୁଣି ସେ ଟିକିଏ

ବ୍ୟସ୍ତ ହୋଇପଡ଼ିଲେ । କାରଣ ସେତେବେଳେ ତ ମଠରେ ଗାଡ଼ି ନ ଥିଲା; ଏଣୁ କି ଉପାୟରେ ସାଧୁ କଚେରୀରେ ପହଞ୍ଚିବେ ? ଦୀର୍ଘ ପଇଁତିରିଶି ମାଇଲ ବାଟ, କଚେରୀ ସମୟକୁ ପହଞ୍ଚିବାକୁ ହେବ । ସାଧୁ କିନ୍ତୁ ସମସ୍ତ ଧ୍ୟାନ କରି ହଠାତ୍ କହିଲେ, 'ମାଆଙ୍କର ଦୟା ହେଲେ ଖଣ୍ଡିଆ କାହ୍ନୁ ମଧ୍ୟ ଘୋଡ଼ାର କାମ କରିବ ।"



ସାଧୁଙ୍କ ପାଟିରୁ କଥା ସରି ନାହିଁ, କାହ୍ନୁଟି ଶର ପରି ଧାଇଁଲା । ଘଣ୍ଟାକ ମଧ୍ୟରେ ସେ କଟକରେ ପହଞ୍ଚି କଚେରୀରେ ହାଜର ହେଲେ । ଏ ଘଟଣା ଦେଖି ଲୋକେ ନିଜ ନିଜର ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ସାଧୁଙ୍କୁ ଦେଖିବାକୁ କଚେରୀଠାରେ ବହୁତ ଲୋକ ଜମା ହୋଇଥିଲେ ଓ ତାଙ୍କ ପାଦତଳେ ପଡ଼ି କିଏ କେତେ ପାଦଧୂଳି ନେଲେ ।

ଦେବୀ ଆରାଧନାରେ ଲୋକ ଅସାଧ୍ୟ ସାଧନ କରିପାରେ ବୋଲି ଲୋକଙ୍କର ପୂର୍ଣ୍ଣ ବିଶ୍ୱାସ ଜାତ ହେଲା ।

## ବାଘ ଅଛି ବୋଲି ଜାଣଇ ନାହିଁ । (୪)

ଗୋପପୁର ଗୋଟିଏ ରାଜ୍ୟ ନ ହେଲେ ସୁଦ୍ଧା ନନ୍ଦଙ୍କୁ ତହିଁର ରାଜା କୁହା ଯାଉଥିଲା । ସେହିପରି ଆମ ଓଡ଼ିଶାରେ ସୁକନ୍ଦା, ଆଳି, କନକା ପ୍ରଭୃତି ଗୋଟିଏ ଲେଖାଏଁ ଜମିଦାରୀ ହେଲେ ମଧ୍ୟ ସେଥିର ଜମିଦାରମାନଙ୍କର ଉପାଧି ଥିଲା 'ରାଜା' ।

ପୁରୁଣା କାଳର କଥା । ସେତେବେଳେ 'କୁଜଙ୍ଗ' ଓ 'କଣ୍ଢାଗଡ଼' ଦୁଇଟି ଶ୍ରେଷ୍ଠ ଜମିଦାରୀ ଥିଲା । ଏହି ଜମିଦାରୀ ଦୁଇଟି ବର୍ତ୍ତମାନର କଟକ ଜିଲ୍ଲାର ତିର୍ତ୍ତୋଲ ଥାନା ଅଧୀନସ୍ଥ ଦୁଇଟି ଅଞ୍ଚଳ । ଏଥିରୁ ବେଶ୍ ବୁଝାଯିବ ଯେ, ସେ ଜମିଦାରୀ ଦୁଇଟି କେତେ ଥିଲା ଓ ସେଠାର ରାଜାମାନଙ୍କର ପରାକ୍ରମ କେତେ ?

ସେକାଳରେ ଶ୍ରେଷ୍ଠ ହେଲେ ସୁଦ୍ଧା ଯଦି କେହି ରାଜା ଉପାଧି ପାଉଥିଲେ, ତେବେ ସେଥିରେ ତାଙ୍କର ଭାରି ଗର୍ବ । ରାଜା ହେବାର ଅନ୍ୟ ଗୁଣ ଥାଉ ବା ନ ଥାଉ, ପାଇକ ସେନା ନେଇ ରାଜ୍ୟ ଜୟ କରିବା ଓ ପ୍ରଜାମାନଙ୍କ ଉପରେ ଶାସନ ଜାରି କରି ବିଳାସ ବ୍ୟସନରେ ଦିନ କାଟିବା ସେମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । ସେତେବେଳେ ଏହିଭଳି ରାଜାମାନେ ନିଜ ନିଜକୁ ପୃଥିବୀରେ ଇନ୍ଦ୍ର ଚନ୍ଦ୍ର ବୋଲି ମନେ କରୁଥିଲେ ।

କଣ୍ଢାଗଡ଼ ରାଜାଙ୍କ ଉପାଧି ଥିଲା 'ସାମନ୍ତରାୟ' ଏବଂ କୁଜଙ୍ଗ ରାଜାଙ୍କ ଉପାଧି ଥିଲା 'ଷଣ୍ଢ' । ଆଜିକାଲି 'ଷଣ୍ଢ' ଉପାଧି ଶୁଣି କେହି କେହି ହସି ପାରନ୍ତି; ମାତ୍ର ସେତେବେଳେ ସେପରି ଉପାଧି ସବୁ ପ୍ରଚଳିତ ଥିଲା । ଉତ୍କଳ ମହାରାଜାଙ୍କର ଉପାଧି ଥିଲା 'ଗଜପତି' । କେତେକ ଗଡ଼ଜାତ ରାଜାଙ୍କ ଉପାଧି ଥିଲା 'ସିଂହ' ଏବଂ କୌଣସି କୌଣସି ଜମିଦାରଙ୍କର 'ହାତୀ' ଉପାଧି ମଧ୍ୟ ଥିଲା । ଷଣ୍ଢ ଭାରି ବଳୁଆ ଓ ହିନ୍ଦୁମାନଙ୍କର ପୂଜ୍ୟ । ତେଣୁ 'ଷଣ୍ଢ' ଉପାଧିଧାରୀ ରାଜାମାନେ ଯୋଗ୍ୟ ବିବେଚିତ ହେଉଥିଲେ ।

କୁଜଙ୍ଗ ଆୟତନରେ କଣ୍ଠାଗଡ଼ଠାରୁ ବଡ଼ । ଷଣ୍ଢ ରାଜା କ୍ଷତ୍ରିୟ ବଂଶର । କଣ୍ଠାଗଡ଼ର ସାମନ୍ତରାୟ ବଂଶ ବିଶୁଦ୍ଧ କରଣ । ଜାତି ବିଷୟରେ ଅଭିମାନ ଉଭୟ ବଂଶ ମଧ୍ୟରେ ବହୁକାଳରୁ ରହି ଆସିଥାଏ । ଉଭୟେ ପରସ୍ପରକୁ ଖାତିର କରନ୍ତି ନାହିଁ ।

ଝଙ୍କଡ଼ର ଶାରଳା ଠାକୁରାଣୀ ଓଡ଼ିଶାବିଖ୍ୟାତ । ସେହି ଠାକୁରାଣୀଙ୍କ ମନ୍ଦିର ନିକଟରେ କଣ୍ଠାପଡ଼ା ବୋଲି ଗୋଟିଏ ଗ୍ରାମ ଏବେ ମଧ୍ୟ ଦେଖିବାକୁ ମିଳେ । କଣ୍ଠାପଡ଼ା ନାମଟି ସେକାଳର 'କଣ୍ଠାଗଡ଼'ରୁ ହୋଇଥିବାର ଶୁଣାଯାଏ । ସାମନ୍ତରାୟଙ୍କ ବଂଶଧର ଆଜିସୁଦ୍ଧା ଏହି କଣ୍ଠାପଡ଼ାରେ ବାସ କରୁଛନ୍ତି । ସାମନ୍ତରାୟ ବଂଶର ଉଆସ ଭାଙ୍ଗିପଡ଼ିଛି । ମାତ୍ର ତାହାର ପଥର ମୂଳଦୁଆ ଆଜିପର୍ଯ୍ୟନ୍ତ ପଡ଼ିରହିଛି ।

କଣ୍ଠାଗଡ଼ର ସେ ଜମିଦାରୀ ଆଉ ନାହିଁ କିମ୍ବା ରାଜବଂଶର ଆଡ଼ମ୍ବର ଓ ପୂର୍ବ ନାହିଁ । କୁଜଙ୍ଗ ରାଜବଂଶର ଅବସ୍ଥା ମଧ୍ୟ ସେହିପରି । ଶାରଳା ଦେବୀ ଥିଲେ କଣ୍ଠାଗଡ଼ ରାଜାଙ୍କର ଇଷ୍ଟଦେବୀ । ଅତି ପ୍ରତ୍ୟକ୍ଷ ତାଙ୍କର ମହିମା ।

ପୁରୀ ରାଜା ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ବେଳେ ମହାପ୍ରଭୁ ଶ୍ରୀଜଗନ୍ନାଥ ଯୁଦ୍ଧକୁ ଯାଇଥିବା ଭଳି ଶାରଳା ଠାକୁରାଣୀ ମଧ୍ୟ ଭକ୍ତ ପାଇଁ ନିଜେ ଖଣ୍ଡା ଧରି ଯୁଦ୍ଧ କରିଥିଲେ । 'କଣ୍ଠାଗଡ଼' ଓ 'କୁଜଙ୍ଗ ଗଡ଼'—ଏହି ଦୁଇ ରାଜ୍ୟର ସୀମା ପରସ୍ପର ଲଗାଲଗି । କଣ୍ଠାଗଡ଼ର ଗୁଣପଟେ କଣ୍ଠା ବାଉଁଶର ବଣ ଅତି ଗହଳ ଭାବେ ବଢ଼ିଥାଏ । ସେଥିପାଇଁ ଏହି ରାଜ୍ୟର ନାମ କଣ୍ଠାଗଡ଼ ହୋଇଥିବା କଥା ଶୁଣାଯାଏ । ସେହି କଣ୍ଠା ବାଉଁଶର ଗହଳିଆ ଜଙ୍ଗଲ ଭିତରେ ବହୁତ ହରିଣ ନିର୍ଭୟରେ ବାସ କରୁଥାଆନ୍ତି । ଥରେ ଷଣ୍ଢ ରାଜା ସେହି ହରିଣମାନଙ୍କୁ ଶିକାର କରିବା ପାଇଁ ନିଜ

ରାଜ୍ୟର ସୀମା ପର୍ଯ୍ୟନ୍ତ ଚାଲି ଆସିଥାନ୍ତି । ନିକଟସ୍ଥ ଶାରଳା ଦେବୀଙ୍କ ମନ୍ଦିରରୁ ଘଣ୍ଟ ଓ ଘଣ୍ଟାର ଶବ୍ଦ ସେ ଶୁଣିପାରିଲେ । ଦେବୀଙ୍କ ଦର୍ଶନ ଲାଭ ସକାଶେ ତାଙ୍କର ଆଗ୍ରହ ବଢ଼ିଲା । ତେଣୁ ସେ ଶିକାର ଛାଡ଼ି ସିଧା ମନ୍ଦିର ଆଡ଼କୁ ଚାଲିଲେ । ସେଦିନ କଣ୍ଟାଗଡ଼ର ରାଣୀ ଓ ରାଜଜେମା ଦେବୀ ଦର୍ଶନକୁ ଆସିଥାଆନ୍ତି । ଜେମା ଅତି ସୁନ୍ଦରୀ । ଷଣ୍ଢ ରାଜାଙ୍କର ତାଙ୍କ ଉପରେ ଦୃଷ୍ଟି ପଡ଼ିଗଲା । ଯୁବକ ସେ; ଜେମାଙ୍କର ଅପୂର୍ବ ରୂପ-ଲାବଣ୍ୟ ଦେଖି ମୁଗ୍ଧ ହୋଇପଡ଼ିଲେ ଏବଂ ତାଙ୍କୁ ନିଜର ରାଣୀ କରିବା ପାଇଁ ମନସ୍ଥ କଲେ । ଏହା ପରେ ଷଣ୍ଢ ରାଜା ପାରିଧିରୁ ଉଆସକୁ ଫେରିଆସିଲେ ।

'କିପରି କଣ୍ଟାଗଡ଼ ଜେମାଙ୍କୁ ପାଇପାରିବେ'. ଏହା ହିଁ କୁଜଙ୍ଗ ରାଜାଙ୍କର ପ୍ରଧାନ ଚିନ୍ତାର ବିଷୟ ହେଲା । ସେଥିପାଇଁ କଣ୍ଟାଗଡ଼କୁ ସେ ଦୂତ ପଠାଇଲେ । କଣ୍ଟାଗଡ଼ ରାଜା ଦୂତ ମୁଖରୁ ପ୍ରସ୍ତାବଟି ଶୁଣିଥିଲେ । ମାତ୍ର ଜାତି ଅଭିମାନ ହେତୁ ସେଥିରେ ସେ ରାଜି ନ ହୋଇ ପରିଷ୍କାର ଭାବରେ ମନା କରିଦେଲେ । ଦୂତଠାରୁ ଉତ୍ତର ପାଇ ଷଣ୍ଢ ରାଜାଙ୍କର କ୍ରୋଧ ଜାତ ହେଲା । ସେ କଣ୍ଟାଗଡ଼ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ଜେମାଙ୍କୁ ନେବା ପାଇଁ ସ୍ଥିର କଲେ ।

ସଙ୍ଗେ ସଙ୍ଗେ ଯୁଦ୍ଧର ଆୟୋଜନ ହେଲା । ଷଣ୍ଢ ରାଜା ନିଜର ପାଇକ ସୈନ୍ୟଙ୍କୁ ନେଇ କଣ୍ଟାଗଡ଼ ସୀମା ନିକଟସ୍ଥ ତୋଟାରେ ଛାଉଣୀ ପକାଇଲେ । ତାଙ୍କର ଛାଉଣୀ ଦେଖି କଣ୍ଟାଗଡ଼ର ସାଆନ୍ତେ କାତର ହୋଇପଡ଼ିଲେ । କାରଣ ଷଣ୍ଢ ରାଜାଙ୍କର ପାଇକ ସୈନ୍ୟ ଯଥେଷ୍ଟ ବେଶୀ ଥିବା ସ୍ଥଳେ କଣ୍ଟାଗଡ଼ର ସୈନ୍ୟ ତାର ଅର୍ଦ୍ଧେକ ମଧ୍ୟ ହେବ ନାହିଁ । ସାଆନ୍ତେ ତ ବିପଦ ଆପଦ ବେଳେ ନିଜର ଇଷ୍ଟଦେବୀଙ୍କର ଆଶ୍ରୟ ନେଇଥାନ୍ତି । ତେଣୁ ନ ଖାଇ ନ ପିଇ ସେ ଶାରଳାଙ୍କ ମନ୍ଦିରରେ ଅଧିଆ ପଡ଼ିଲେ । ଦୁଇଦିନ ପଡ଼ିରହି ଧ୍ୟାନ କରିବା ପରେ ଦେବୀ ସ୍ୱପ୍ନରେ କହିଲେ, "ତୁ ଯାଇ ଚୁପ୍ ହୋଇ

ବ'ସ । ମୁ ତୋ ପାଇଁ ଯୁଦ୍ଧ କରିବ ।" ତଥାପି ସାଆନ୍ତଙ୍କ ମନରେ ଶାନ୍ତ ଆସୁ ନ ଥାଏ ।

ଷଣ୍ଢ ରାଜା ଫେରି ନ ଯିବା ପର୍ଯ୍ୟନ୍ତ ରାଜାଙ୍କ ମନରେ ଭୟ ରହିଥାଏ । ତେଣୁ ସେ ଦେବୀଙ୍କ ପାଖରେ କଳସ ବସାଇ ନିଜେ ବସିରହି ଚଣ୍ଡୀପାଠ କରୁଥାନ୍ତି । ଯୁଦ୍ଧଭୟରେ ତାଙ୍କ ଗୁଡ଼ିରୁ ସତେ ଯେପରି ନିଆଁ ଖସୁଥାଏ । ଏହି ଚିନ୍ତାରେ ରାଜା ଶୁଖି ଶୁଖି କଣ୍ଟା ହୋଇଗଲେ । ରାଣୀଙ୍କ ଦଶା ମଧ୍ୟ ତଦ୍ରୂପ । ତାଙ୍କ ତଣ୍ଟିରେ ପାଣି ଟୋପା ପର୍ଯ୍ୟନ୍ତ ଗଳିଲା ନାହିଁ । ମୁହଁ କଳାକାଠ ପଡ଼ିଗଲା । ଲୁହ ଝରି ଝରି ଆଖି ଫୁଲିଗଲା ।

ନିଜ ଭକ୍ତମାନଙ୍କର ଏପରି ଅବସ୍ଥା ଦେଖି ଦେବୀ ଆଉ ଥୟ ଧରି ରହି ପାରିଲେ ନାହିଁ । ମନେ ମନେ ସେ ଯୁଦ୍ଧକୁ ବାହାରିଲେ । ପୂର୍ବକାଳରେ ପୁରୁଷ ଲୋକମାନେ ମୁଣ୍ଡରେ ଚୁଟି ରଖୁଥିଲେ । ଷଣ୍ଢ ରାଜାଙ୍କ ପାଇକମାନଙ୍କର ଚୁଟି ଥାଏ । ଉଦୁଉଦିଆ ଖରାବେଳ । ସୈନ୍ୟମାନେ ଖାଇ ପିଇ ଛାଉଣୀରେ ଶୋଇଥାନ୍ତି । ଷଣ୍ଢ ରାଜା ଦେଖିଲେ, "ଗୋଟିଏ ସ୍ତ୍ରୀ ମୂର୍ତ୍ତି, ନାଲି ଶାଢ଼ୀ ପିନ୍ଧିଛନ୍ତି । ଦେହ ତାଙ୍କର ନିଆଁ ପରି ଜଳୁଛି, ତାଙ୍କୁ ଅନାଇଁ ହେଉ ନାହିଁ । ହାତରେ ତାଙ୍କର ଗୋଟିଏ ଖଣ୍ଡା ଅଛି । ସେ ସେହି ଖଣ୍ଡାରେ ପାଇକମାନଙ୍କର ଗଳା କାଟି ମୁଣ୍ଡଗୁଡ଼ିକୁ ଗୋଟି ଗୋଟି କରି ବରଗଛର ଡାଳରେ ଟଙ୍ଗାଇ ଦେଉଛନ୍ତି ।" ରାଜା ବଡ଼ ଭୟ ପାଇଲେ । ପାଖକୁ ଯିବାକୁ ତାଙ୍କର ସାହସ ହେଲା ନାହିଁ । ସେ କିଏ ବୋଲି ଜାଣିବାକୁ ବହୁତ ଚିନ୍ତା କଲେ । ଶେଷରେ ସ୍ଥିର କଲେ, ଏହି ଦେବୀ ମୂର୍ତ୍ତି ଶାରଳାଙ୍କ ବ୍ୟତୀତ ଅନ୍ୟ କେହି ନୁହେଁ । ତହୁଁ ରାଜା ସେହିଠାରେ ରହି ଭକ୍ତି ସହକାରେ ଦେବୀଙ୍କୁ ପ୍ରଣାମ କଲେ । ପ୍ରଣାମ କରି ଉଠିବା ବେଳକୁ ସେ ମୂର୍ତ୍ତି ସେଠାରେ ଆଉ ନ ଥିଲେ । ରାଜାଙ୍କର ବିଶ୍ୱାସ ଦୃଢ଼ ହେଲା । ସେ ଗଛ ମୂଳକୁ ଯାଇ ଦେଖନ୍ତି ତ ଅଗଣିତ ମୁଣ୍ଡ

ଝୁଲୁଛି ଏବଂ ନରମୁଣ୍ଡଗୁଡ଼ିକରୁ ରକ୍ତ ଥପ୍ ଥପ୍ ହୋଇ ତଳେ ପଡ଼ୁଛି । ଗଣ୍ଡି ସବୁ ତମ୍ବୁ ଭିତରେ ଚକଡ଼ରେ ଜୁଡ଼ୁବୁଡ଼ୁ ହୋଇ ପଡ଼ିରହିଛି ।



ସେହି [illegible] ନାଁକୁ ମିଳିଲା । ଆଜିର ନାମ 'ମୁଣ୍ଡ[illegible] ଦିଶ' ।

[illegible] ଯେଉଁ [illegible] ବାନ୍ଧିଥିଲେ, ସେମାନଙ୍କୁ ନେଇ ନିଜ ରାଜ୍ୟକୁ ଫେରିଗଲେ । ସେତେବେଳେ କର୍ଣ୍ଣାଟର ଲୋକେ ଗାଇଥିଲେ—

"ଷଣ୍ଢ ଆସିଥିଲା ହାକୁଟି ଖାଇ,
ବାଘ ଅଛି ବୋଲି ଜାଣିଲା ନାହିଁ !
ବାଘର ହେଣ୍ଟାଳ ଶୁଣିଲା ଯହୁଁ,
ଷଣ୍ଢ ପଳାଇଲା ରାହାମା ଠାଉଁ ।"

ଷଣ୍ଢ ରାଜା ଫେରିଗଲେ ସତ, ମାତ୍ର ମନରେ ତାଙ୍କର ଘୋର ଦୁଃଖ । ଏଣେ ଜେମାଙ୍କୁ ପାଇବାର ପ୍ରବଳ ଇଚ୍ଛା ! କଅଣ କରିବେ,

ଭାବବାକୁ ଲାଗିଲେ । ଅନ୍ୟ ଉପାୟ ନ ଦେଖି ଶେଷରେ ସେ ଶାରଳାଙ୍କର ଶରଣ ପଶିଲେ । ଗୋଟିଏ ଘରେ କବାଟ ବନ୍ଦ କରି ନ ଖାଇ, ନ ପିଇ ଏକ ଲୟରେ ଦେବୀଙ୍କୁ ଧ୍ୟାନ କଲେ ।

ଦେବୀ ନିଜେ ଯୁଦ୍ଧ କରି କଣ୍ଟାଗଡ଼କୁ ରକ୍ଷା କଲେ ବୋଲି ସାଆନ୍ତ ରାଜାଙ୍କର ଭାରି ଗର୍ବ ଆସିଥାଏ । ନିଜକୁ ଜଣେ ବଡ଼ ଭକ୍ତ ବୋଲି ସେ ଅହଙ୍କାର କଲେ ଓ ନିଜର ଭକ୍ତପଣିଆ ଗୃହଆଡ଼େ କହି ବୁଲିଲେ । ଏଥିରେ ଦେବୀ ତାଙ୍କ ଉପରେ ଅସନ୍ତୁଷ୍ଟ ହେଲେ ।

ଏଣେ ଷଣ୍ଢ ରାଜା ଦିନକୁ ଦିନ ବଡ଼ ଦୁର୍ବଳ ହୋଇଗଲେ । ଭୋକରେ ତାଙ୍କର ପେଟ ଭିତର ଜଳି ଉଠିଲା । ଆଖିରୁ ଜୁଳୁଜୁଳା ପୋକ ବାହାରିବା ପରି ଜଣାଗଲା । ତଥାପି ସେ ଧ୍ୟାନ ଛାଡ଼ିଲେ ନାହିଁ, କିମ୍ବା କବାଟ ଖୋଲିଲେ ନାହିଁ । ଏହିପରି ଦୁଃଖ କଷ୍ଟ ସହି ଧ୍ୟାନ କରୁ କରୁ ତାଙ୍କୁ ନିଦ ହୋଇଗଲା । କଥାରେ କହନ୍ତି—

"କ୍ଷେକେ ଓଡ଼ିଆ ନିଦ ଯାଏ,<br>କ୍ଷେକେ ବଙ୍ଗାଳୀ ପେଟ ଖାଏ ।"

ଭକ୍ତର ଏପରି ଦୁଃଖ ଦେଖି ଦେବୀ ଦୟାରେ ତରଳି ଗଲେ ଏବଂ ଷଣ୍ଢ ରାଜାଙ୍କୁ ସ୍ୱପ୍ନରେ କହିଲେ, "ତୁ ଏଥର ଯୁଦ୍ଧକୁ ଯାଆ । ନିଶ୍ଚୟ ତୋର ଜୟ ହେବ । ସେ ଗର୍ବୀ ସାଆନ୍ତ ପାଇଁ ମୁଁ ଆଉ ଯୁଦ୍ଧ କରିବି ନାହିଁ ।" ରାଜା ଦେବୀଙ୍କଠାରୁ ବର ପାଇବା ପରେ କବାଟ ଫିଟାଇଲେ ।

ପୁଣି ଯୁଦ୍ଧ ହେଲା । ଷଣ୍ଢ ରାଜା ଏଥର ଜୟଲାଭ କଲେ; ମାତ୍ର କଣ୍ଟାଗଡ଼ ଜେମାଙ୍କୁ ପାଇ ପାରିଲେ ନାହିଁ । କାରଣ ଜେମା ସେତେବେଳକୁ ଆତ୍ମହତ୍ୟା କରି ସାରିଥିଲେ । ନିଜର ଭକ୍ତି ବଳରେ ଲୋକମାନେ ଏପରି ଭାବରେ ଦେବୀଙ୍କ କୃପାଲାଭ କରି ପାରୁଥିଲେ ।



# କୋଣାର୍କ ମନ୍ଦିର

## ଅର୍କକ୍ଷେତ୍ର (୧)

ଦ୍ୱାପର ଯୁଗର କଥା । ଶ୍ରୀକୃଷ୍ଣଙ୍କର ପୁଅ ଶାମ୍ବ କୌଣସି ଏକ ଋଷି ଅଭିଶାପରୁ କୁଷ୍ଠ ରୋଗଗ୍ରସ୍ତ ହେଲେ । ଶ୍ରୀକୃଷ୍ଣ ସେତେବେଳେ ଦ୍ୱାରକାପୁରରେ ରାଜା ଥିଲେ । ସେହି ସ୍ଥାନଟି ଆମ ଓଡ଼ିଶାଠାରୁ ପ୍ରାୟ ବାରଶହ ମାଇଲ ଦୂରରେ ଅବସ୍ଥିତ । ସେ ସମୟରେ ଖାଲି ଦ୍ୱାରକା କାହିଁକି, ସାରା ଭାରତର ଲୋକେ ମଧ୍ୟ ଜାଣିଥିଲେ ଯେ, ଚନ୍ଦ୍ରଭାଗା ମୁହାଣ ସୂର୍ଯ୍ୟପୂଜାର ଉପଯୁକ୍ତ ସ୍ଥାନ । ସେଠାରେ ସୂର୍ଯ୍ୟଙ୍କର ଆରାଧନା କଲେ ଭକ୍ତ ନିଜର ମନ ଅନୁସାରେ ଫଳ ପାଏ । ତେଣୁ ଶ୍ରୀକୃଷ୍ଣ ଶାମ୍ବଙ୍କୁ ସେଠାକୁ ପଠାଇଲେ । ଶାମ୍ବ ଆସି ଚନ୍ଦ୍ରଭାଗା ମୁହାଣରେ ବସି ସୂର୍ଯ୍ୟଙ୍କୁ ପ୍ରାର୍ଥନା କରିଥିଲେ ।

ରୋଗମାନଙ୍କ ମଧ୍ୟରେ 'କୁଷ୍ଠରୋଗ' ସବୁଠାରୁ ବଡ଼ । ତେଣୁ ତାକୁ 'ବଡ଼ରୋଗ' ବୋଲି କୁହାଯାଏ । ଲୋକମାନଙ୍କର ବିଶ୍ୱାସ, ଯେଉଁ ବ୍ୟକ୍ତି ଅତି ଗୁରୁତର ଅନ୍ୟାୟ ବା ପାପ କରେ, ତାକୁ ସେହି ରୋଗ ହୁଏ । ସୂର୍ଯ୍ୟ ହେଉଛନ୍ତି, ଧର୍ମ ଦେବତା । ସେ ଯଦି କୌଣସି ଲୋକର କାର୍ଯ୍ୟରେ ଅସନ୍ତୁଷ୍ଟ ହୁଅନ୍ତି, ତେବେ ସେହି ଲୋକକୁ ଏ ରୋଗ ହୋଇଥାଏ । ପୁଣି ସେହି ରୋଗକୁ ଆରୋଗ୍ୟ କରିବାର ଅଧିକାର ଏକା ତାଙ୍କର ହାତରେ ।

ଏତେ ବଡ଼ ଉତ୍କଟ ରୋଗ ଶାମ୍ବଙ୍କୁ ହେବାରୁ ସେ ଅତି ବିକଳ ହୋଇ କାନ୍ଦିଲେ । ସାଧାରଣତଃ କୁଷ୍ଠ ରୋଗୀକୁ ଘରେ ବା ଗ୍ରାମରେ ରହିବାକୁ ସ୍ଥାନ ଦିଆଯାଏ ନାହିଁ । କାଳେ ଏହି ରୋଗ

ଜଣକ ଦେହରୁ ଅନ୍ୟ ଦେହକୁ ଡେଇଁବ, ଏଥିପାଇଁ ଲୋକମାନେ ସେ ରୋଗକୁ ଭାରି ଭୟ କରନ୍ତି । ସମସ୍ତେ ସେ ରୋଗୀଠାରୁ ଦୂରରେ ରହିବାକୁ ଚାହିଁଥାନ୍ତି । ଶାମ୍ବ ଯେତେବେଳେ ଭାବିଲେ ଯେ, ତାଙ୍କୁ ଘରର ସମସ୍ତ ମାୟା ଛୁଟାଇ ବାହାରକୁ ଚାଲିଯିବାକୁ ପଡ଼ିବ, ସେ ସେତେବେଳେ ଆଉ ଥୟ ଧରି ପାରିଲେ ନାହିଁ । କାନ୍ଦି କାନ୍ଦି ପିଲାଙ୍କ ପରି ତଳେ ଗଡ଼ିଗଲେ । ଏହା ଦେଖି ଶ୍ରୀକୃଷ୍ଣ ବଡ଼ ଦୁଃଖିତ ହେଲେ । ମାତ୍ର କରିବେ କ'ଣ ? ତାହାର ଚାବିକାଠି ତ ସୂର୍ଯ୍ୟଙ୍କ ହାତରେ । ତେଣୁ ସେ ନିରୁପାୟ ହୋଇ ଶାମ୍ବଙ୍କୁ ଚନ୍ଦ୍ରଭାଗାକୁ ପଠାଇଲେ । ସେ ଜାଣିଥିଲେ ଯେ ସେହି ସ୍ଥାନ ହିଁ ଏକମାତ୍ର 'ଅର୍କକ୍ଷେତ୍ର' ବା ସୂର୍ଯ୍ୟତୀର୍ଥ । ସେଠାରେ ବସି ପ୍ରାର୍ଥନା କଲେ ସୂର୍ଯ୍ୟ ସନ୍ତୁଷ୍ଟ ହୋଇ ବର ଦାନ କରିଥାଆନ୍ତି ।



ଶାମ୍ବ କିଛିଦିନ ସେହି ଅର୍କକ୍ଷେତ୍ରରେ ତପସ୍ୟା କରିବା ପରେ ସମ୍ପୂର୍ଣ୍ଣ ରୋଗମୁକ୍ତ ହେଲେ ଏବଂ ଆନନ୍ଦରେ ଘରକୁ ଫେରିଗଲେ ।

ସେହି ସମୟରୁ ତାହା ସୂର୍ଯ୍ୟଙ୍କର ତୀର୍ଥ ବୋଲି ବିଖ୍ୟାତ ହୋଇ-ଆସିଛି । ସେହି ଅର୍କକ୍ଷେତ୍ରଟି ନୀଳାଚଳର ଗୋଟିଏ କୋଣରେ ଅବସ୍ଥିତ ଥିବାରୁ ତାହାର ନାମ କୋଣାର୍କ ହୋଇଅଛି ।

ରାଜା ନରସିଂହ ଦେବ ସେହି କ୍ଷେତ୍ରରେ ଏକ ସୁନ୍ଦର ମନ୍ଦିର ତୋଳାଇଥିଲେ । ଏହି ମନ୍ଦିରର ନାମ ହେଲା **କୋଣାର୍କ** ମନ୍ଦିର । ରାଜା ଏଠାରେ ସୂର୍ଯ୍ୟ ମୂର୍ତ୍ତି ସ୍ଥାପନ କରି ପୂଜା କରାଇଲେ । ସେଥି-ପାଇଁ କୋଣାର୍କ ମନ୍ଦିରର ଅନ୍ୟ ନାମ 'ସୂର୍ଯ୍ୟ ମନ୍ଦିର' ।

## ଶଶୀମହଲ (୨)

ଓଡ଼ିଶାରେ ଗଙ୍ଗ ବଂଶର ରାଜତ୍ୱ ସମୟ । ସେତେବେଳେ ନରସିଂହ ଦେବ ଯୁବରାଜ । ବସନ୍ତ ଋତୁ ହୋଇଥାଏ । ଭଲ ପାଗ ଦେଖି ସେ ପାରିଧିକୁ ଯିବା ପାଇଁ ଇଚ୍ଛା କଲେ । ଦିନ ସ୍ଥିର ହେଲା । ଶୁଭବେଳ ଦେଖି ଯୁବରାଜ ଅନୁକୂଳ କଲେ । ଯୁବରାଜଙ୍କୁ ମଧ୍ୟ ଜେମାମଣି ବୋଲି ଡାକନ୍ତି । କେତେ ଜଣ ମାହୁନ୍ତ ଓ କେତେକ ପାଇକ ସଙ୍ଗରେ ଧରି ଜେମାମଣି ବାହାରିଲେ । ବଣ ଭିତରେ ତମ୍ବୁ ପଡ଼ିଲା । ସୈନ୍ୟ ସାମନ୍ତଙ୍କ ସହିତ, ସେଠାରେ କିଛି ଦିନ ରହି ଯୁବରାଜ ବସନ୍ତର ମଳୟ ପବନ ଉପଭୋଗ କଲେ । ତତ୍‌ପରେ ସେ ବସନ୍ତ ଋତୁର ଫୁଲ-ଫଳଭରା ବନଭୂମିର ଶୋଭା ଦେଖିବାକୁ ତମ୍ବୁ ଭିତରୁ ବାହାରକୁ ବାହାରି ପଡ଼ିଲେ । ସବୁ ସୈନ୍ୟଙ୍କୁ ସେଠାରେ ଛାଡ଼ି ଅଳ୍ପ କେତେଜଣ ଦେହରକ୍ଷୀଙ୍କ ସହିତ ସେ ଜଙ୍ଗଲ ବୁଲି ବାହାରିଲେ ।

ଭ୍ରମଣରେ ବାହାରିବା ବେଳେ ଦୁଇଟି ହଳଦିଆବସନ୍ତ ଚଢ଼େଇ ଯୁବରାଜଙ୍କ ଆଖି ଆଗରେ ପଡ଼ିଲେ । ଗୋଟିଏ ଗଛର ଏ ଡାଳରୁ ସେ ଡାଳକୁ ସେମାନେ ଗୋଡ଼ାଆଗୋଡ଼ି ହୋଇ ଉଡ଼ି ଯାଉଥାନ୍ତି । ଯୁବରାଜ ଭାବିଲେ, ଏହା ତ ଶୁଭ ଲକ୍ଷଣ । ଆଚ୍ଛା, କଣ ଶୁଭ ଘଟଣା ଘଟିବ ଦେଖିବା । କୋଇଲିର ମଧୁର ସ୍ୱରରେ ମୁଗ୍ଧ ହୋଇ ସେ ଆଗକୁ ମାଡ଼ି ଚାଲିଲେ । ଯାଉ ଯାଉ ଜଣେ ଗଡ଼ଜାତ ରାଜାଙ୍କ ରାଜ୍ୟ ସୀମାରେ ସେ ପହଞ୍ଚିଲେ ।

ସୀମାକୁ ଲାଗି ସେହି ରାଜାଙ୍କ ଉଆସ । ସେହି ରାଜ୍ୟର ଜେମା ଶଶୀକଳା ସଖୀମାନଙ୍କ ସହିତ ବଣକୁ ବୁଲି ଆସିଥାଆନ୍ତି । ଜେମା-ମଣିଙ୍କ ସହିତ ଜେମାମଣିଙ୍କର ଭେଟ ହୋଇଗଲା । ଉଭୟେ ଉଭୟ-ଙ୍କର ଧୀର-ଶାନ୍ତ ମୂର୍ତ୍ତି ଓ ରୂପଶୋଭାରେ ମୁଗ୍ଧ ହୋଇପଡ଼ିଲେ ।

ରାଜଜେମା ଅଳ୍ପ କ୍ଷଣ ଅଟକି ଯାଇ ପୁଣି ଲଜ୍ଜାଭରେ ହୋଇ ବାଟ ଧରି ଚାଲିଗଲେ । କିଛି ସମୟ ପରେ ସେହି ରାଜ୍ୟର ରାଜା ନିଜେ ଆସି ଯୁବରାଜଙ୍କୁ ବହୁତ ଆଦର କରି ସସମ୍ମାନେ ନିଜ ଉଆସକୁ ପାଛୋଟି ନେଲେ । କାରଣ ନରସିଂହ ଦେବ ଉତ୍କଳର ମଉଡ଼ମଣି ଗଜପତି ରାଜାଙ୍କ ଯୁବରାଜ ଏବଂ ସେ ହେଉଛନ୍ତି, ଜଣେ ଅଧୀନସ୍ଥ ଗଡ଼ଜାତ ରାଜା । ଯୁବରାଜ ଜେମାଙ୍କୁ ଦେଖିବାବେଳୁ ଭାବୁଥାନ୍ତି ଯେ, ହଳଦୀ-ବସନ୍ତ ଦେଖିଥିବା ଶୁଭଫଳ ତାଙ୍କୁ ମିଳିଲା । ରାଜାଙ୍କ ଉଆସରେ ବହୁତ ଆଦର ପାଇ ଯୁବରାଜ କିଛିଦିନ କୁଣିଆ ହୋଇ ରହିଗଲେ ।

ଦିନେ ସନ୍ଧ୍ୟା ସମୟରେ ଜେମାମଣି ରାଜଉଦ୍ୟାନକୁ ବୁଲି ଯାଇଥାନ୍ତି; ଏଣେ ଜେମା ଗୋଟିଏ ଫୁଲହାର ଧରି ସଖୀମାନଙ୍କ ସହିତ ସେହି ଉଦ୍ୟାନରେ ଅପେକ୍ଷା କରିଥା'ନ୍ତି ।

ଯୁବରାଜ, ରାଜଜେମାଙ୍କର ପ୍ରଥମ ସାକ୍ଷାତ ପାଇବା ଦିନୁ ମନେ ମନେ ତାଙ୍କୁ ହିଁ ବିବାହ କରିବାକୁ ସ୍ଥିର କରିଥାନ୍ତି । ଜେମା ତ ଗଜପତି ରାଜାଙ୍କ ପୁଅ ନରସିଂହ ଦେବଙ୍କ ଗୁଣ, ଯଶ ଓ ବୀରତ୍ୱ ବିଷୟ ଆଗରୁ ଶୁଣି, ଥରେ ତାଙ୍କର ଦର୍ଶନ ପାଇବାକୁ ଚାହୁଁଥିଲେ, ଯୋଗକୁ ସେଦିନ ବଣରେ ଅକସ୍ମାତ୍ ତାଙ୍କର ଦର୍ଶନ ପାଇଥିବାରୁ ନିଜକୁ ଧନ୍ୟ ମନେ କରୁଥାଆନ୍ତି । ଏଣୁ ଜେମା ମଧ୍ୟ ଜେମାମଣିଙ୍କ ବ୍ୟତୀତ ଅନ୍ୟ କାହାରିକୁ ବିବାହ କରିବେ ନାହିଁ ବୋଲି ମନସ୍ଥ କରିଥାନ୍ତି ।

ଉଭୟଙ୍କର ମନକଥା ମନରେ ଥାଏ । ମାତ୍ର ଗୁରୁଜନମାନଙ୍କ ମତାମତକୁ ଅପେକ୍ଷା କରି ଉଭୟେ ତାହା ପ୍ରକାଶ କରୁ ନ ଥାନ୍ତି । ସେଦିନ ଜେମାଙ୍କ ପିତା ନିଜ ସ୍ତ୍ରୀଙ୍କୁ କହୁଥିଲେ, "ଏହି ଯୁବରାଜ ଯେପରି ସୁଶୀଳ, ସେହିପରି ସବୁ ଗୁଣରେ ପରିପୂର୍ଣ୍ଣ । ଏହାଙ୍କ ସହିତ କୌଣସି ପ୍ରକାର ବନ୍ଧୁତା ସ୍ଥାପିତ ହେଲେ, କେଡ଼େ ସୁନ୍ଦର ନ ହୁଅନ୍ତା !" ରାଣୀ ଏହା ଶୁଣି ଉତ୍ତର ଦେଲେ, "ଉତ୍କଳର ଗଜପତି

ରାଜାଙ୍କ ସହିତ ବନ୍ଧୁ ବାନ୍ଧିବାକୁ ଆମର ଏତେ ବଡ଼ ଭାଗ୍ୟ କାହିଁ ?" ଏ ବିଷୟ ମଧ୍ଯ ଜେମା ଶୁଣି ପାରିଥାନ୍ତି । ଏଥିପାଇଁ ତାଙ୍କର ଉତ୍ସାହ ଦୁଇଗୁଣ ବଢ଼ିଯାଇଥାଏ । ସେଦିନ ରାଜଉଦ୍ୟାନରେ ବୁଲୁ ବୁଲୁ ଯୁବରାଜ କ୍ରମେ ଜେମାଙ୍କ ନିକଟବର୍ତ୍ତୀ ହେଲେ । ଯୁବରାଜଙ୍କୁ ଦେଖିପାରି ଜେମା ସଖୀମାନଙ୍କ ସହିତ ହସି ହସି ଆସି ତାଙ୍କ ଗଳାରେ ଫୁଲହାରଟି ଲମ୍ବାଇ ଦେଇ ତଳକୁ ମୁହଁ ପୋତି ଠିଆହେଲେ । ସେ ଏତିକି ମାତ୍ର କହିଲେ, "ଶ୍ରୀଚରଣରେ ଦାସୀ ହେବାକୁ ଏ ଅଧୀନା ପ୍ରାର୍ଥନା କରେ ।" ଯୁବରାଜ ଅବିବାହିତ ଥାଆନ୍ତି ଏବଂ ତାଙ୍କର ମଧ୍ଯ ଏ ପ୍ରସ୍ତାବରେ କୌଣସି ଆପତ୍ତି ନ ଥାଏ । ସେ କେବଳ ନିଜ ପିତାଙ୍କ ଆଦେଶକୁ ଅପେକ୍ଷା କଲେ । ତଥାପି କହିଲେ, "ହଉ, ମୁଁ ଫୁଲମାଳ ସହିତ ସ୍ନେହପୂର୍ଣ୍ଣ ପ୍ରାର୍ଥନାକୁ ଆନନ୍ଦରେ ଗ୍ରହଣ କଲି । ଉତ୍କଳ ଗଜପତିଙ୍କ ଉଆସରେ ପହଞ୍ଚିବା ପରେ ମୁଁ ଏହାର ବ୍ୟବସ୍ଥା କରିବି ।" ଯୁବରାଜଙ୍କ ମନ ଚଞ୍ଚଳ ହୋଇ ଉଠିଲା । ତହିଁ ପରଦିନ ସେ ସୈନ୍ୟ ସାମନ୍ତ ଧରି ନିଜ ରାଜବାଟୀକୁ ଫେରିଆସିଲେ ।

ଯୁବରାଜ ପାରିଧିରେ ଥିବା ସମୟରେ ଗଜପତିଙ୍କ ଉଆସରେ ଏକ ଆଲୋଚନା ହୋଇ ସ୍ଥିର ହୋଇଥାଏ ଯେ, ରାଜା ତ ବୁଢ଼ା ହୋଇଗଲେଣି, ମଲା ଗଲା ସଂସାର, କେତେବେଳେ କ'ଣ ଦୁର୍ଘଟଣା ଘଟିଯାଇ ପାରେ । ତେଣୁ ଯୁବରାଜଙ୍କ ବିବାହ କାର୍ଯ୍ୟ ବଢ଼ାଇ ଦେବା ଉଚିତ । କାରଣ ଅବିବାହିତ ରାଜପୁତ୍ର ପକ୍ଷେ ଗାଦି ଗ୍ରହଣ କରିବା ନିୟମବିରୁଦ୍ଧ । ରାଜାଙ୍କର ପ୍ରଥମ ଲକ୍ଷ୍ୟ ହେଲା, ଯୁବରାଜଙ୍କ ବିବାହ । ସେଥିପାଇଁ ରାଜା ଉପଯୁକ୍ତ କନ୍ୟାପାତ୍ରୀ ସ୍ଥିରକରି ବିବାହର ସମସ୍ତ ଆୟୋଜନ ସାରିଥାଆନ୍ତି । ଖାଲି ଯୁବରାଜଙ୍କୁ ଅପେକ୍ଷା ଥାଏ ।

ଯୁବରାଜ ଉଆସରେ ପହଞ୍ଚି ପ୍ରଥମେ ଏସବୁ ଆୟୋଜନର କାରଣ ବୁଝି ପାରିଲେ ନାହିଁ । ତାଙ୍କ ମା' ତ ଆଗରୁ ମରିଯାଇଥିଲେ,

ଉଆସରେ ଥାଆନ୍ତି, ବାପାଙ୍କ ବୁଢ଼ୀ ଦାସୀ । ଯୁବରାଜ ସେହି ଦାସୀଙ୍କୁ ମା' ଆଖିରେ ଦେଖନ୍ତି । ତାଙ୍କଠାରୁ ସେ ସମସ୍ତ ବିଷୟ ଶୁଣିଲେ । ମନ ତାଙ୍କର ଛଟପଟ ହେଲା । ତେଣେ ନିଜେ ଜଣକର ବରଣମାଳା ଗ୍ରହଣ ପୂର୍ବକ ସତ୍ୟ କରି ଆସିଛନ୍ତି; ଏଣେ ବାପା ଅନ୍ୟଠାରେ ସତ୍ୟ କରି ସାରିଲେଣି । ପୁଣି ନିଜ ମନକଥା ପ୍ରକାଶ କଲେ, ବାପାଙ୍କ ମନରେ କଷ୍ଟ ହୋଇପାରେ ! ଅତି ପିଲାଟି ଦିନରୁ ବାପା ତାଙ୍କୁ ବହୁତ ସ୍ନେହ ଆଦର କରି ବଢ଼ାଇ ଆଣିଛନ୍ତି । ବୃଦ୍ଧ ବୟସରେ ବାପାଙ୍କୁ କଷ୍ଟ ଦେବାକୁ ଯୁବରାଜଙ୍କର ମନ ବଳିଲା ନାହିଁ । ଏଣେ ବାପାଙ୍କ ସତ୍ୟରକ୍ଷା ହେଲେ; ନିଜ ସତ୍ୟ ଲଙ୍ଘନ ହେଉଛି; ପୁଣି ବାପାଙ୍କ ମନରେ କଷ୍ଟ ନ ଦେଲେ ଅନ୍ୟ ଜଣକ ମନରେ କଷ୍ଟ ଦେବାକୁ ହେଉଛି । ଯୁବରାଜ କିଛି ସ୍ଥିରକରି ନ ପାରି ମନଦୁଃଖରେ କାଳ କାଟିଲେ ।

ଯୁବରାଜଙ୍କ ମନକଷ୍ଟ କଥା କେହିହେଲେ ବୁଝିପାରିଲେ ନାହିଁ । କିନ୍ତୁ ଶେଷରେ ସମସ୍ତେ ଅନୁମାନ କରିନେଲେ ଯେ, ଏତେବଡ଼ ମଙ୍ଗଳ କାର୍ଯ୍ୟଟି ହେବାକୁ ଯାଉଛି; ଯୁବରାଜଙ୍କ ମା, ରାଣୀ ଥିଲେ କେତେ ଖୁସି ନ ହେଉ ଥାନ୍ତେ ! ଯୁବରାଜ ବୋଧହୁଏ ନିଜ ମାଆଙ୍କୁ ମନେ ପକାଇ ମନଦୁଃଖ କରୁଛନ୍ତି । ତାହା ବିନା ଦୁଃଖର କାରଣ ଆଉ କ'ଣ ବା ହୋଇପାରେ ? ପାଞ୍ଚ ସାତ ଦିନ ପରେ ବିଭାଘର ସରିଗଲା । ବୋହୂ ରାଣୀ ଉଆସକୁ ଆସିଲେ । ଗୋଟିଏ ଛାଞ୍ଚରେ ଗଢ଼ା ସେ । ତାଙ୍କର ରୂପ ଯେପରି, ଗୁଣ ମଧ୍ୟ ସେହିପରି । ମାଛିକୁ ମ' ବୋଲି କହନ୍ତି ନାହିଁ । ଭାରି ଧୀର ସ୍ୱଭାବ, କଅଁଳ ନରମ କଥା । ସବୁ ଭଲ, କିନ୍ତୁ ଯୁବରାଜଙ୍କର ମନ କେଉଁଥିରେ ସୁଖ ନ ଥାଏ । ଅଳ୍ପ କେତୋଟି ଦିନ ପରେ, ଯୁବରାଜ ଗାଦିରେ ବସିବାର ମାସେ ପୂରିଛି କି ନାହିଁ, ବୁଢ଼ା ରାଜା ଆଖି ବୁଜିଲେ ।

ଅନେକ ଦାସ ଦାସୀ ଥିଲେ ସୁଦ୍ଧା ରାଣୀ ନିଜେ ରାଜାଙ୍କର ସେବା କରୁଥାଆନ୍ତି । ସେତେ ଯାହା କଲେ ମଧ୍ୟ ରାଜାଙ୍କର ମନର ପରିବର୍ତ୍ତନ ଘଟୁ ନ ଥାଏ । ଦିନେ ରାଣୀ, ରାଜାଙ୍କ ମନଦୁଃଖର କାରଣ ଜାଣିବା ପାଇଁ କେତେ ପ୍ରକାରେ ଭୁଲାଇ ପଚାରିଲେ, ରାଣ ପକାଇଲେ, ବହୁତ ଅନୁରୋଧ କଲେ । ଅତି ଅନିଚ୍ଛା ସତ୍ତ୍ୱେ ରାଜା ତହିଁର କାରଣ ପ୍ରକାଶକଲେ । ରାଣୀ ସବୁକଥା ଶୁଣି ବିନୀତ ଭାବରେ କହିଲେ, "ଆପଣ ସେ ଜେମାଙ୍କୁ ଆଣନ୍ତୁ । ମୋର ସେଥିରେ କୌଣସି ଦୁଃଖ ହେବ ନାହିଁ; ମୁଁ ବରଂ ଖୁସିହେବି । ତାଙ୍କୁ ପାଟରାଣୀ ମଧ୍ୟ କରନ୍ତୁ । ଦାସୀ ପରି ମୁଁ ତାଙ୍କର ସେବା କରିବି । ଆପଣ ଯେହେତୁ ତାଙ୍କୁ ଏତେ ସ୍ନେହ ଓ ସମ୍ମାନ କରନ୍ତି, ଏଣୁ ସେ ମୋର ପୂଜ୍ୟା ।"

ରାଜା ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । ମନ ପରିବର୍ତ୍ତନ କରିବା ପାଇଁ ସେ ପୁଣି ପାରିଧିକୁ ବାହାରିଗଲେ । ଏଥର ସେ ବହୁତ ଦିନ ବଣରେ ରହିଗଲେ ।

ଏଣେ ଜେମା 'ଶଶୀକଳା' ନରସିଂହ ଦେବଙ୍କୁ ଝୁରି ଝୁରି ପାଗଳୀ ପରି ହୋଇଗଲେ । ପିତା ତାଙ୍କର ସମସ୍ତ ବିଷୟ ଜାଣି-ପାରିଲେ । ତେଣୁ ସେ ଦୂତ ଓ ଦାସୀମାନଙ୍କ ସହିତ ଜେମାଙ୍କୁ ଗଜପତି ରାଜା ନରସିଂହ ଦେବଙ୍କ ଉଆସକୁ ପଠାଇଦେଲେ । ଶଶୀକଳା ଦାସୀମାନଙ୍କ ସହିତ ଆସି ଗଜପତି ରାଜାଙ୍କ ନଅରରେ ପହଞ୍ଚି ଭାରି ଖୁସି ହୋଇଗଲେ । ମାତ୍ର ଯେତେବେଳେ ଶୁଣିଲେ ଯେ ରାଜା ନାହାନ୍ତି, ସେତେବେଳେ ସେ ବଡ଼ ଲଜ୍ଜା ବୋଧକଲେ । ଜେମାଙ୍କ ସଙ୍ଗରେ ଥିବା ଦାସୀମାନଙ୍କଠାରୁ ପରିଚୟ ପାଇ, ରାଣୀ ତାଙ୍କୁ ଅତି ଆଦର ଯତ୍ନରେ ଉଆସରେ ରଖାଇଲେ ଏବଂ ନିଜେ ଦାସୀ ପରି ତାଙ୍କର ସେବା କରିବାରେ ଲାଗିଲେ । ରାଜାଙ୍କ ମନରେ ଯେପରି ଅଶାନ୍ତି ପୂରି ରହିଥାଏ; ଶଶୀକଳାଙ୍କ ମନ ମଧ୍ୟ ସେହିପରି

କେଉଁଠି ଲାଗୁ ନ ଥାଏ । ରାଣୀ ତାଙ୍କର ମନ ଭୁଲାଇବାକୁ ଯେତେ ଚେଷ୍ଟା କଲେ ସୁଦ୍ଧା ତାଙ୍କର ସବୁବେଳେ ସେହି ଗୋଟିଏ ଧ୍ୟାନ ।

ବଳେ ବଳେ ଆସିଛନ୍ତି ବୋଲି କାଳେ ରାଜା କ'ଣ ଭାବିବେ, ଏହିପରି ଚିନ୍ତା କରି ଏବଂ ରାଜାଙ୍କୁ ଝୁରି ଝୁରି, ଶଶୀକଳା ଗଜପତିଙ୍କ ନଅରରେ ବେମାର ପଡ଼ିଲେ । ସେଠେ ଦିନଯାଏ ରାଜା ପାରିଧିରୁ ଫେରି ନ ଥାନ୍ତି । ରାଣୀ ନିଜ ଭଉଣୀ ପରି ତାଙ୍କ ସେବାରେ ଲାଗି ପଡ଼ିଲେ । ଶେଷରେ ରୋଗ ବଢ଼ିଗଲା । ଶଶୀକଳା ଯେତେବେଳେ ଆଉ ବଞ୍ଚିବାର ଆଶା ଦେଖି ପାରିଲେ ନାହିଁ, ସେ ଗୋଟିଏ ପତ୍ର ଲେଖି ରାଣୀଙ୍କୁ ଦେଲେ ଏବଂ କାରିଗର ଡକାଇ ଗୋଟିଏ ବାକ୍ସ ତିଆରି କରାଇବାକୁ ଅନୁରୋଧ କଲେ । ଏହାପରେ ଶଶୀକଳା କହିଲେ, "ଭଉଣୀ ! ତୁମର ସ୍ନେହ ଓ ଉପକାର ପରିଶୋଧ କରିବା ମୋ ଭାଗ୍ୟରେ ଯୁଟିଲା ନାହିଁ । ଦୟାକରି ଆଉ ଦୁଇଟି କାମ ମୋ ପାଇଁ କରିବ । ମୋ ପତ୍ରଟିକୁ ରାଜାଙ୍କୁ ଦେଇ-ଦେବ ଏବଂ ମୁଁ ମରିଗଲେ ମୋର ମୃତ ଦେହକୁ ଏହି ବାକ୍ସରେ ପୂରାଇ ନଦୀରେ ଭସାଇ ଦେବ ।" ଏତକ କହିବା ପରେ ଶଶୀକଳା-ଙ୍କର ପ୍ରାଣବାୟୁ ଉଡ଼ିଗଲା ।

ତାଙ୍କ କହିବା ଅନୁସାରେ ରାଣୀ ଶଶୀକଳା ତାଙ୍କର ଶବକୁ ବାକ୍ସରେ ପୂରାଇ ଭସାଇ ଦେଲେ । ତହିଁ ପରଦିନ ରାଜା ଆସି ପହଞ୍ଚି, ସମସ୍ତ ବିଷୟ ଶୁଣି ପାରିଲେ ଏବଂ ଚଟି ପଡ଼ି ପାଗଳ ପରି ହୋଇଗଲେ । ନ ଖାଇ, ନ ପିଇ, ରାଜା ସେହି ନଈ ବନ୍ଧେ ବନ୍ଧେ ଚାଲିଲେ । କେତେ ଦିନ ପରେ ଚନ୍ଦ୍ରଭାଗା ମୁହାଣରେ ପହଞ୍ଚି ରାଜା ଦେଖିଲେ, ବାକ୍ସଟି ମୁହାଣ ନିକଟରେ ସମୁଦ୍ରରେ ଭାସୁଛି । ବୋଇତ ନଙ୍ଗର ପକାଇବା ପରି ତାହା ସ୍ଥିର ଭାବରେ ରହିଅଛି । ନରସିଂହଦେବ ତାଙ୍କ ସ୍ନେହର ଶଶୀକଳା ପାଇଁ ସେଇଠି ଗୋଟିଏ

ସୂର୍ଯ୍ୟ ମନ୍ଦିର ତୋଳାଇବାକୁ ସ୍ଥିର କଲେ । ସଙ୍ଗେ ସଙ୍ଗେ ଆଦେଶ ହେଲା । ମିସ୍ତ୍ରୀ ମୂଲିଆ ଲାଗି ପଡ଼ିଲେ । ମନ୍ତ୍ରୀ ଶିବେଇ ସାମନ୍ତରାୟ



ସମୁଦ୍ର ପୋତାଇଲେ । ବାରହେ କାରିଗର ବାରବର୍ଷ ଲାଗି ମନ୍ଦିରଟିଏ ତୋଳିଲେ । କେହି କାରିଗର ମୁଣ୍ଡି ମାରି ପାରିଲେ ନାହିଁ । ଶେଷକୁ ଧରମା ତାହାର ମୁଣ୍ଡି ମାରିଲେ । ମନ୍ଦିରଟି ଶିଳ୍ପକଳାରେ ହେଲା ବିଶ୍ୱବିଖ୍ୟାତ । ମାତ୍ର ମନ୍ଦିର ଶୂନ୍ୟ ହୋଇ ରହିଲା । ତେଣୁ ରାଜା ସେଥିରେ ଶଶୀକଳାଙ୍କ ପ୍ରତିମୂର୍ତ୍ତି ରଖିବାକୁ ଇଚ୍ଛା କଲେ ।

କାରିଗର କହିଲା, "ରୂପ ନ ଦେଖିଲେ ପ୍ରତିମୂର୍ତ୍ତି ଗଢ଼ାହେବ କିପରି ?" ତେଣୁ ଶଶୀକଳା ରୂପର ଗୋଟିଏ କନ୍ୟା ଖୋଜିବାକୁ ରାଜା ଦେଶେ ଦେଶେ ବୁଲିଲେ; କିନ୍ତୁ ତାଙ୍କର ପରିଶ୍ରମ ବୃଥା ହେଲା । ଶଶୀକଳା ପରି ସୁନ୍ଦରୀ କନ୍ୟା କେଉଁଠିହେଲେ ସେ ପାଇଲେ ନାହିଁ । ରାଜା ନିରାଶ ହୋଇ ମନ୍ଦିରରେ ଗୋଟିଏ ସୂର୍ଯ୍ୟ ମୂର୍ତ୍ତି ସ୍ଥାପନ କରାଇଲେ । ଏହି ମନ୍ଦିରର ନାମ ହେଲା କୋଣାର୍କ । ତାଜମହଲର

ତଥାର ମୂଳରେ ଯେପରି ସାହାଜାହାନ ଓ ମମତାଜମହଲଙ୍କର ପ୍ରେମ ନିହିତ ଅଛି, ରାଜା ନରସିଂହ ଦେବ ଓ ରାଜଜେମା ଶଶୀକଳା, ଉଭୟଙ୍କର ପରସ୍ପର ପ୍ରୀତି ଗଭୀର ଓ ଅକପଟ ସ୍ନେହରୁ ସେହିପରି କୋଣାର୍କ ମନ୍ଦିରର ଉତ୍ପତ୍ତି । ତେଣୁ ଏହି ମନ୍ଦିରକୁ କୋଣାର୍କ ମନ୍ଦିର ନ କହି ବରଂ 'ଶଶୀମହଲ' କହିଲେ ଠିକ୍ ହେବ ।

# ଶିବେଇ ସାମନ୍ତରାୟଙ୍କ କାଉଖିଆ (୩)

ନରସିଂହଦେବ ଚନ୍ଦ୍ରଭାଗା ମୁହାଣଠାରେ ଗୋଟିଏ ମନ୍ଦିର ତୋଳାଇବାକୁ ଇଚ୍ଛାକଲେ । ମାତ୍ର ତାହା କୂଳରେ ତୋଳା ନ ହୋଇ ତୋଳା ହେବ, ପାଣି ମଝିରେ, ଯେଉଁଠି ଶଶୀକଳାଙ୍କ ଶବ ଥିବା ବାକ୍ସଟି ଭାସୁଥିଲା । ଏଣୁ ପ୍ରଥମେ ସମୁଦ୍ରର ସେହି କ୍ଷୁଦ୍ର ଅଂଶଟିକୁ ପୋତାଇବା ଦରକାର ପଡ଼ିଲା । ଏହି କାର୍ଯ୍ୟର ଭାର ରାଜା ନିଜ ମନ୍ତ୍ରୀଙ୍କ ଉପରେ ଛାଡ଼ି ଦେଲେ । ସେତେବେଳେ ମନ୍ତ୍ରୀ ଥିଲେ, ଶିବେଇ ସାମନ୍ତରାୟ । ରାଜାଙ୍କ ଆଦେଶ ପାଇ ସାମନ୍ତରାୟ ବଡ଼ ଚିନ୍ତାରେ ପଡ଼ିଲେ । ସମୁଦ୍ର ପୋତାହେବ କିପରି ?

ମାଟି କାଦୁଅରେ ତ ଆଉ ସମୁଦ୍ର ପୋତା ହେବ ନାହିଁ ? ତାହା ହେବାର ଥିଲେ, ସହଜରେ ହୋଇ ପାରିଥାନ୍ତା । ମାତ୍ର ସମୁଦ୍ର ଭିତରେ ମାଟିର ମୂଳଦୁଆ କଅଣ ସମ୍ଭବ ହୋଇପାରେ ! ପୁଣି ମାଟି ଉପରେ ପଥର ଗଢ଼ା ଦେଉଳ ଅବା ରହିବ କିପରି ? ତେଣୁ ପଥର ଦ୍ୱାରା ସମୁଦ୍ର ପୋତାଇ ମୂଳଦୁଆ ତିଆରି କରିବାକୁ ସେ ସ୍ଥିର କଲେ । ହେଲେ ପଥର ମିଳିବ କେଉଁଠାରୁ ? ତାହା ତ ନିକଟରେ ନାହିଁ । ପ୍ରାୟ ତିରିଶ ମାଇଲରୁ ଅଧିକ ଦୂରବର୍ତ୍ତୀ ପାହାଡ଼ମାନଙ୍କରୁ ପଥର କଟାଇ ଶଗଡ଼ ଓ ବୋଇତରେ ବୁହାଇ ଆଣିବାକୁ ପଡ଼ିବ ।

ଅସଂଖ୍ୟ ପଥୁରିଆ ଲାଗି ପାହାଡ଼ମାନଙ୍କରୁ ପଥର କାଟିଲେ । ପଥରକଟା ଶବ୍ଦରେ ସାରା ପର୍ବତ କମ୍ପି ଉଠିଲା । ସାଧାରଣତଃ ପାହାଡ଼ ପାଖରେ କୌଣସି ଏକ ଶବ୍ଦ ହେଲେ, ସଙ୍ଗେ ସଙ୍ଗେ ତାହା ପ୍ରତିଧ୍ୱନିତ ହୋଇଥାଏ । ଏକାବେଳକେ ହଜାର ହଜାର ନିହାଣ-ମୁଗୁରର ଠକ୍ ଠକ୍ ଶବ୍ଦରେ ଏକ ବିରାଟ ପ୍ରତିଧ୍ୱନି ଶୁଣାଗଲା । ଏଣୁ ପର୍ବତ ପାର୍ଶ୍ୱସ୍ଥ ଅଞ୍ଚଳରେ ଏକ ଚହଳ ପଡ଼ିଗଲା । ପାହାଡ଼ର ଜନ୍ତୁମାନେ ଡରି କରି ଦୂର ବନକୁ ପଳାଇଲେ ।

ହଜାର ହଜାର ଗାଡ଼ି, ଶଗଡ଼ରେ ପଥର ସବୁ ବୁହା ହୋଇ ବୋଇତ ପାଖରେ ଜମାହେଲା । ଅସଂଖ୍ୟ ବୋଇତ ବୋଝାଇ ହୋଇ ଚନ୍ଦ୍ରଭାଗା ମୁହାଣକୁ ପଠାଗଲା । ମନ୍ତ୍ରୀଙ୍କ ନିର୍ଦ୍ଦେଶ ଅନୁସାରେ, ସେଠାରେ ପାଣି ମଝିରେ ବୋଇତମାନଙ୍କରୁ ପଥରସବୁ ପକାଗଲା । ଏହିପରି ଅନେକ ଦିନ କାମ ଚାଲିଲା । ପାହାଡ଼ ଦେହରେ ଅସଂଖ୍ୟ ଖାଲ ଓ ଗୁମ୍ଫା ସୃଷ୍ଟି ହେଲା । ମାତ୍ର ସମୁଦ୍ର ପୋତାହୋଇ ପାରିଲା ନାହିଁ । ମନ୍ତ୍ରୀଙ୍କ ମନରେ ଭାରି କଷ୍ଟ । ମନ୍ତ୍ରୀ ପାରିଲେ ନାହିଁ ବୋଲି ଯଦି ରାଜା ଜାଣନ୍ତି, ତେବେ ଆଉ ରକ୍ଷା ନାହିଁ । ଏଣୁ ତାଙ୍କୁ କିଛି ଭଲ ଲାଗିଲା ନାହିଁ । କିପରି ସମୁଦ୍ର ପୋତା ହେବ—ଏହି ଚିନ୍ତାରେ ସେ ପାଗଳ ପରି ହୋଇ ଏଣେ ତେଣେ ବୁଲିଲେ ।

ଦିନରାତି ସବୁବେଳେ ଅସଂଖ୍ୟ ବୋଇତ ଗଦା ଗଦା ପଥର ସମୁଦ୍ରରେ ଅଜାଡ଼ୁଥାଆନ୍ତି, କିନ୍ତୁ ପାଣି ଭିତରେ ଏତେ ପଥର ଯେ କୁଆଡ଼େ ଯାଉଛି, ତାର କିଛି ପତ୍ତା ମିଳୁ ନ ଥାଏ । ମୂଲିଆମାନେ ଦିନରାତି କାମରେ ଲାଗି ଥାଆନ୍ତି । ମାତ୍ର ମନ୍ତ୍ରୀଙ୍କର ଦେଖା ନ ଥାଏ । ସେ ରାଜାଙ୍କ ଭୟରେ ଲୁଚି ବୁଲୁଥାନ୍ତି ଏବଂ ସମୁଦ୍ର ପୋତା ହେଲା କି ନାହିଁ, ସେହି ଖବର ସବୁଦିନେ ବୁଝୁଥାନ୍ତି । କେହି ଯେପରି ତାଙ୍କୁ ଚିହ୍ନି ନ ପାରିବ, ସେଥିପାଇଁ ସେ ସାଧାରଣ ଧୋତି ଖଣ୍ଡେ ପିନ୍ଧି, ଯାହିତାହି ଜାମା ଖଣ୍ଡେ ଦେହରେ ଗଳାଇଥାନ୍ତି ।

ଏହିପରି ଭାବରେ ବୁଲୁ ବୁଲୁ ଦିନେ ସନ୍ଧ୍ୟାବେଳେ ସାଆନ୍ତେ ଗୋଟିଏ ଜଙ୍ଗଲ ପାଖରେ ପହଞ୍ଚିଲେ । ସେତେବେଳକୁ କଳାହାଣ୍ଡିଆ ମେଘ ଖଣ୍ଡେ ଘୋଟି ଆସିଲା । ସାଆନ୍ତେ ବିଚାରିଲେ ରାତିଟା ଏ ବଣ ଭିତରେ ରହିଲେ ବର୍ଷାରେ ଓଦା ହୋଇଯିବାକୁ ପଡ଼ିବ । ତା' ସାଙ୍ଗକୁ ପୁଣି ବାଘ, ଭାଲୁ ଭୟ ଅଛି ! ଏଣୁ ସେ ତର ତର ହୋଇ ନିକଟସ୍ଥ ଗ୍ରାମକୁ ଚାଲିଗଲେ । ସେଠାରେ ଜଣକ ଘରକୁ ପଶିଯାଇ

ଦେଖିଲେ, ସେ ଘରେ ଜଣେ ମାତ୍ର ବୁଢ଼ୀ ଅଛି । ତା'ର ଆଉ କେହି ନାହାନ୍ତି ।

ମନ୍ତ୍ରୀ ସେହି ବୁଢ଼ୀକୁ କହିଲେ, "ମାଉସୀ ! ତୁମ ଘରେ ମୋତେ ଏ ରାତିଟା ରହିବାକୁ ଟିକଏ ଜାଗା ଦେବ ?" ବୁଢ଼ୀ ତ ନିଜର ପୁତ୍ର ଓ ସ୍ୱାମୀଙ୍କୁ ହରାଇ ଏକାକିନୀ ବଡ଼ ଦୁଃଖରେ କାଳ କାଟୁଥାଏ । ଖାଇବା, ଶୋଇବା, ବସିବା ଇତ୍ୟାଦି ସବୁ କାମକୁ ଘରେ ସେ ଏକା । କାହା ସାଙ୍ଗରେ ବସି ଟିକେ କଥାବାର୍ତ୍ତା ହେବା ସୁବିଧା ମଧ୍ୟ ତାହା ଭାଗ୍ୟରେ ଯୁଟେ ନାହିଁ । ଜଣେ ଲୋକ ତା ଘରେ ରହିବାକୁ ଚାହୁଁଛନ୍ତି ଶୁଣି ବୁଢ଼ୀ ଭାରି ଖୁସି ହେଲା ଏବଂ ବଡ଼ ଆଦର କରି ତାଙ୍କୁ ରଖିଲା । ବୁଢ଼ୀ କହିଲା, "ଆହେ ପୁଅ ! ମୋର ତ କେହି ନାହାନ୍ତି; ତୁମେ ରହିଲେ, ମୋର ସେଥିରେ କ୍ଷତି କ'ଣ ? ବରଂ ମୋର ଆନନ୍ଦ । ମାତ୍ର ମୁଁ ତ ଗରିବ ଲୋକ । ତୁମଙ୍କୁ କଅଣ ଖାଇବାକୁ ଦେବି ? ତୁମେ ତ ବଡଘର ପୁଅପରି ଦିଶୁଛ !"

—"ସେ କଥା କିଛି ଚିନ୍ତା କରନାହିଁ ମାଉସୀ ! ତୁମେ ଯାହା ଖାଇବ ମୋତେ ସେଇଆ ଦେବ । ମୋ ପାଇଁ ବୃଥା ହଇରାଣ ହୋଇ ଏ ରାତିରେ କଅଣ କେଉଁଠୁ ଆଣିବ ?"

—"ପୁଅ ! ମୋର ଆଜି ଚାଉଳ ନ ଥିଲା । ମାଣ୍ଡିଆ ଚୂନା ମୁଠାଏ ଥିଲା । ସେତକ ଜାଉ କରି ଆଜି ରାତିଟା କଟେଇ ଦେବି ବୋଲି ଭାବିଥିଲି । ତୁମେ କଅଣ ତାକୁ ଖାଇପାରିବ ?"

—"ହିଁ ମାଉସୀ ! ମୋର ଚଳିବ । ମୋ ପାଇଁ ତୁମେ କାହିଁକି ଏତେ ଚିନ୍ତା କରୁଛ ?"

ବୁଢ଼ୀ ମାଣ୍ଡିଆ ଜାଉ ଓ ଶାଗ ଖରଡା ଟିକଏ ବାଢ଼ି ଥୋଇ-ଦେଲା ଏବଂ ଆଦରରେ କୁଣିଆ ପୁଅଙ୍କୁ ଡାକିଲା । ମନ୍ତ୍ରୀ ସେତେ-ବେଳକୁ ଦୁଇ ଦିନ ହେବ କିଛି ଖାଇ ନ ଥାନ୍ତି, ବୁଢ଼ୀର ଡାକରା

ଯାଇ ଝଟ୍ ପଟ୍ ହାତ ଧୋଇ ଥାଳୀ ପାଖରେ ବସିପଡ଼ିଲେ । ଜାଉ ଶୀତଳ ହୋଇ ନ ଥାଏ । ମନ୍ତ୍ରୀ ବେଗକ ବଳରେ ଥାଳୀ ମଝିରେ ହାତ ପୂରାଇ ଦେଲେ । ହାତ ଖୁବ୍ ତାତିଯିବାରୁ 'ଓହୋ, ଓହୋ' ହୋଇ ଉଠାଇ ଆଣିଲେ । ସେତେବେଳକୁ ଶିବେଇ ସାମନ୍ତରାୟ ପାଣି ମଝିରେ ପଥର ପକାଇ ସମୁଦ୍ର ପୋତୁଛନ୍ତି ବୋଲି ସବୁଆଡ଼େ ଲୋକେ ଜାଣି ଯାଇଥାନ୍ତି । ବୁଢ଼ୀ ତ କୁଣିଆଙ୍କ ପାଖରେ ବସିଥିଲା, ସେ ତାଙ୍କର 'ଓହୋ, ଓହୋ' ହେବା ଶୁଣି ହାତ ପୋଡ଼ିଗଲା ? ଫୁଙ୍କି



ଦିଅ ବାପା, ଫୁଙ୍କି ଦିଅ । କହିଲା, "ଆହା, ଆହେ ପୁଅ, ଶିବେଇ ସାଁନ୍ତରା ପାଣି ମଝିରେ ପଥର ପକାଇବା ପରି ଗରମ ଜାଉ ଥାଳୀ ମଝିରେ ହାତ ପୂରାଇଲ କାହିଁକି ? ଗୋଟିଏ ପାଖରୁ ସିନା ଶୀତଳେଇ ଖାଇଲେ ହୁଅନ୍ତା !"

କୁଣିଆ ପଚାରିଲେ, "ମାଉସୀ ଶିବେଇ ସାନ୍ତରା କଥା କଅଣ କହିଲ ?"

ବୁଢ଼ୀ କହିଲା, "ଅହେ ପୁଅ ! ସେ କଥା କାହାକୁ କହିବ ନାହିଁ । ରଜାଘର କଥା । ଯଦି କୋଉଠୁ ଶୁଣନ୍ତି, ତେବେ ବାନ୍ଧି-ନେବେ । ରାଜା ଚନ୍ଦ୍ରଭାଗାରେ ଗୋଟିଏ ଦେଉଳ ତୋଳିବାକୁ ମନ କଲେ । ତେଣୁ ମନ୍ତ୍ରୀ ମୂଳଦୁଆ ଗଡ଼ାଇବାକୁ ସମୁଦ୍ର ପୋତୁଛନ୍ତି । କେତେ ପାହାଡ଼ ହାଣାଇ ପଥର ଜମା କଲେଣି, ହେଲେ ସମୁଦ୍ର ପୋତି ହେଉ ନାହିଁ । ଗୋଟିଏ କଡ଼ରୁ ପୋତିଲେ ସିନା ହୁଅନ୍ତା ! ପାଣି ମଝିରୁ ଯୋଡିଲେ ହବ କିପରି ? ସବୁ ପଥର କ'ଣ ଏକା ଜାଗାରେ ପଡ଼ୁଛି ? ତାଙ୍କୁ ଏ କଥା କହିବ କିଏ ? ଆରେ ବାପ, କ'ଣ ଯଦି ଓଲଟା ବୁଝିବେ, ତେବେ ମୁଣ୍ଡକାଟ । ତାଙ୍କ ବୁଦ୍ଧିରେ ସେ ଯାହା କରୁଛନ୍ତି କରନ୍ତୁ ।"

ବୁଢ଼ୀ କଥା ଶୁଣି ମନ୍ତ୍ରୀ ଆଉ ଜାଉ ଖାଇବେ କଅଣ, ତାଙ୍କ ମନ ଉଛନ୍ନ ହେଲା । ତହିଁ ପରଦିନ ସକାଳୁ ଉଠି ସେ ଯାଇ କୂଳଆଡ଼ୁ ସମୁଦ୍ର ପୋତାଇଲେ । ଆସ୍ତେ ଆସ୍ତେ ଅଳ୍ପ ଦିନରେ ସମୁଦ୍ର ପୋତାହୋଇ ପାରିଲା । ଏଣିକି ଦେଉଳ ପାଇଁ ମୂଳଦୁଆ ପଡ଼ିଲା ।

ପାଠୁଆ ଅପାଠୁଆ ବା ଧନୀ ଦରିଦ୍ର ଭେଦରେ ବୁଦ୍ଧିର ତୁଳନା କରିଯାଇ ପାରେନାହିଁ । ସମସ୍ତଙ୍କଠାରୁ ବୁଦ୍ଧି ଶିକ୍ଷା କରିଯାଇ ପାରେ । ଏଣୁ ପାଠ ପଢ଼ିବା ପିଲାମାନେ ନିଜକୁ ବେଶୀ ବୁଦ୍ଧିଆ ବୋଲି ଗର୍ବକରିବା ଅନୁଚିତ । ଅପାଠୁଆମାନଙ୍କ ମଧ୍ୟରେ ସେମାନଙ୍କଠାରୁ ଆହୁରି ବେଶୀ ବୁଦ୍ଧିଆ ଲୋକ ମଧ୍ୟ ଅଛନ୍ତି ।

## 'କାରଣ ଝିଅରେ ଦାୟ, ନା ପୁଅରେ ଦାୟ' (୪)

ଚନ୍ଦ୍ରଭାଗାରେ ଦେଉଳ ତୋଳା ହେବା ପାଇଁ ମୂଳଦୁଆ ପଡ଼ିଗଲା । ଏଥର ଦେଉଳ ଗଢ଼ା ହେବାର କଥା । ରାଜାଙ୍କର ହୁକୁମ ପାଇ ଓଡ଼ିଶାର ସବୁ ଅଞ୍ଚଳରୁ କାରିଗରମାନେ ଆସି ହାଜର ହେଲେ । ସେମାନଙ୍କର ସଂଖ୍ୟା ହେଲା ବାରଶହ । ମନ୍ତ୍ରୀ ସବୁ କାରିଗରଙ୍କର ରହିବା ପାଇଁ ଘର ତୋଳାଇ ଦେଲେ । ଖାଲି କାରିଗର ସିନା ଏତିକ । ତାଙ୍କୁ ଛାଡ଼ି ପୁଣି ମୂଲିଆ ମଜୁରିଆ ଅଛନ୍ତି । ଏତେ ଲୋକ ସେଠାରେ ଚଳପ୍ରଚଳ ହେବାରୁ ବହୁତ ଦୋକାନ ବଜାର ବସିଲା । କ୍ରମେ ସେହି ସ୍ଥାନଟି ଗୋଟିଏ ସହରରେ ପରିଣତ ହୋଇଗଲା ।

କାମ ଆରମ୍ଭ ହେଲା । ବର୍ଷ ବର୍ଷ ଧରି ବାର ବର୍ଷ ଯାଏ କାମ ଚାଲିଲା । ରାଜା ସେମାନଙ୍କର ଖାଇବା, ପିଇବା ଇତ୍ୟାଦି ସବୁ ଯୋଗାଉଥାନ୍ତି । ଷୋଳ ବର୍ଷର ଆୟ, ରାଜ ଭଣ୍ଡାରରେ ଯାହା ଜମା ହୋଇଥିଲା, ସବୁ ରାଜା ଖର୍ଚ୍ଚ କରିଦେଲେ । ଦେଉଳ ଗଢ଼ା ସରିଗଲା । ମାତ୍ର ମୁଣ୍ଡି ମାରିବା ବାକି ଥାଏ । ମିସ୍ତ୍ରୀମାନଙ୍କର ସରଦାର ବିଶୁ ମହାରଣା । ମୁଣ୍ଡି ମାରିବା ପାଇଁ ସେ ଦେଉଳ ଚୂଳକୁ ଉଠିଗଲେ । ଓଡ଼ିଶାରେ ଯେପରି ସବୁଠାରୁ ବଡ଼ ରାଜା ଗଜପତି, ସେହିପରି ଖାଲି ଓଡ଼ିଶା କାହିଁକି ସାରା ଭାରତରେ ବଡ଼ କାରିଗର ବିଶୁ ମହାରଣା । ମିସ୍ତ୍ରୀମାନଙ୍କ ଉପରେ ସେ ରାଜାପରି । ରାଜା ତାଙ୍କୁ ଭାରି ଆଦର ସମ୍ମାନ କରନ୍ତି । ମହାରଣା ଆନନ୍ଦରେ ମୁଣ୍ଡି ମାରି ଓହ୍ଲାଇ ଆସିଲେ । ସେ ତଳେ ଠିଆ ହୋଇ ଦେଖନ୍ତି ତ 'ଦଧିନଉତି' ଗୋଟିଏ ପାଖକୁ ବଙ୍କାଇ ଗଲାଣି । ସେଦିନ ସନ୍ଧ୍ୟା ହୋଇ-ଯାଇଥାଏ । ଅନ୍ଧାର ରାତିରେ ଆଉ କ'ଣ କରିବେ ? ଦିନସାରା ଖଟି ଖଟି ହାଲିଆ ଲାଗୁଥିଲା । ଏଣୁ ସରଦାର ସବୁ କାରିଗରଙ୍କ ସଙ୍ଗରେ

ବସା ଘରକୁ ଫେରିଆସିଲେ । ମାତ୍ର ମନ୍ଦିରର ଚୂଡ଼ା କାହିଁକି ବଙ୍କା ହେଲା, ଏହି ଚିନ୍ତାରେ ମନ ତାଙ୍କର କେଉଁଠି ଲାଗୁ ନ ଥାଏ । ସମସ୍ତେ ଖାଇ ପିଇ ଶୋଇଲେ । ହେଲେ ବିଶୁଙ୍କ ଆଖିକୁ ନିଦ ନ ଥାଏ ।

ତହିଁ ଆରଦିନ ଖୁବ୍ ସାବଧାନ ହୋଇ ମହାରଣା ଆଉଥରେ ମୁଣ୍ଡି ମାରିଲେ । ଦିନସାରା କାମ କରି କରି ସଞ୍ଜକୁ ସରିଲା । ମାତ୍ର ତଳକୁ ଆସି ଦେଖିଲେ ଯେ 'ଦଧିନଉତି' ପୁଣି ପୂର୍ବପରି ବଙ୍କା, ତାହା ଗୋଟିଏ ପାଖକୁ ବରାବର ଢଳିଯାଉଛି । ବିଶୁ ବଡ଼ ଆଶ୍ଚର୍ଯ୍ୟ ହେଲେ । କେତେ ଚିନ୍ତା କଲେ । ସେ ଭାବିଲେ, ମନ୍ଦିରଟି ମୂଳରୁ ତ ଠିକ୍ ଶିଳ୍ପ ଶାସ୍ତ୍ର ନିୟମ ଅନୁସାରେ ଗଢ଼ାଗଲା । ଆଉ କେଉଁଠି ଦୋଷ ରହିଲା ? ଏହିପରି ଚିନ୍ତାରେ ସେ ଖାଇବା ପିଇବା ମଧ୍ୟ ଭୁଲିଗଲେ । ଥରି ଥରି କରି ସାତ ଥର ମୁଣ୍ଡି ମାରିଲେ; ମାତ୍ର ସବୁ-ଥର ବଙ୍କା ହେଲା । ମହାରଣାଙ୍କର ଅକଲ ଗୁଡୁମ୍ ହୋଇଗଲା । ସେ କି ବୁଦ୍ଧି କରିବେ, ସ୍ଥିର କରି ପାରିଲେ ନାହିଁ ।

ମନ୍ଦିରର ଚୂଳ ଠିକ୍ ଭାବେ ବସି ପାରୁ ନ ଥିବା କଥା ରାଜା ମଧ୍ୟ ଜାଣିଲେ । ସେ ରାଗିକରି ଆଦେଶ ଦେଲେ, "କାଲି ଭିତରେ ଯଦି ମନ୍ଦିରର ଚୂଳ ଠିକ୍ ଭାବେ ବସା ହୋଇ ନ ଥିବ, ତେବେ ବାରଶହ ବଢ଼େଇଙ୍କର ମୁଣ୍ଡକାଟ ହେବ ।" ଏ ହୁକୁମ ଶୁଣି ମିସ୍ତ୍ରୀମାନଙ୍କ ମଧ୍ୟରେ କାନ୍ଦ ବୋବାଳି ପଡ଼ିଗଲା । ବିଶୁ ମହାରଣା ସେତେବେଳକୁ ପାଗଳ ପ୍ରାୟ ହୋଇ ସାରିଲେଣି ।

ଏତିକିବେଳେ ବାର ବରଷର ବାଳକଟିଏ ଗୁଡ଼ିଏ ବର-କୋଳି ଓ ଖଣ୍ଡେ ଚିଠି ଧରି ଆସି ପହଞ୍ଚିଲା । ସେ ଆଣିଥିବା କୋଳିକୁ ଦେଖାଇଲା ଏବଂ କହିଲା, "ମୁଁ ବିଶୁ ମହାରଣାଙ୍କ ପୁଅ । ବାପାଙ୍କ ପାଇଁ ଆମ ବାଡ଼ି ବରକୋଳି ନେଇ ଆସିଛି ।" ବିଶୁ ମହାରଣା ନିଜ

ବାଡ଼ର ବରକୋଳ ଗୁଡ଼ାକୁ ଦେଖି ଚିହ୍ନି ପାରିଲେ । ମାତ୍ର ପୁଅକୁ ଚିହ୍ନିବେ କିପରି ? ସେ ତ ଜନ୍ମରୁ ତାକୁ ଦେଖି ନାହାନ୍ତି । ମହାରଣା ଦେଉଳ ତୋଳିବାକୁ ଘରୁ ଆସିବାର ବାର ବର୍ଷ ପୂରିବାକୁ ବସିଲାଣି। ଘର ଖବର ତାଙ୍କୁ କିଏ ଦିଅନ୍ତା ଅବା କିପରି ?



ମହାରଣା ଚନ୍ଦ୍ରଭାଗାକୁ ଯିବାର କେତେ ମାସ ପରେ ତାଙ୍କ ସ୍ତ୍ରୀ ପୁଅଟିଏ ଜନ୍ମ କଲେ । ସ୍ୱାମୀ ପାଖରେ ନାହାନ୍ତି । ଧର୍ମବଳରୁ ନିର୍ବିଘ୍ନରେ ପୁଅଟିକୁ ପାଇ ଥିବାରୁ ମହାରଣାଙ୍କ ସ୍ତ୍ରୀ ପୁଅର ନାମ ଦେଲେ, 'ଧର୍ମପଦ' ଏବଂ ଶ୍ରଦ୍ଧାରେ ତାକୁ 'ଧରମା' ବୋଲି ଡାକିଲେ । ଧର୍ମପଦ ଦିନକୁ ଦିନ ବଢ଼ିଲା । କ୍ରମେ ବଡ଼ ହୋଇ ସେ ଚାଟଶାଳୀରେ ପଢ଼ିଲା । ଧର୍ମପଦ ଦେଖିଲା, ତାର ସାଙ୍ଗ ପିଲାମାନେ ନିଜ ନିଜ ବାପାଙ୍କ ପାଖରେ କେତେ ଅଳିଅଳି କରୁଛନ୍ତି ଏବଂ କେତେ ଗେହ୍ଲା ହେଉଛନ୍ତି । ତେଣୁ ସେ ତା'ର ମା'କୁ ପଚାରିଲା, "ମା ! ମୋର ବାପା କାହାନ୍ତି ? ମୁଁ ତାଙ୍କ ପାଖକୁ ଯିବ ।"

ମା କହିଲେ, "ବାବୁରେ ! ତୁ ପିଲାଲୋକ । ତୁ କ'ଣ ବାଟ ଦେଖିଛୁ ? ଏତେ ବାଟ ଯିବୁ କପରି ? ତୋତେ ଡର ଲାଗିବ । ତୁ ବଡ଼ ହେଲେ ବାପାଙ୍କ ପାଖକୁ ଯିବୁ । ତୋ ବାପା ଚନ୍ଦ୍ରଭାଗା ମୁହାଣରେ ମନ୍ଦିର ତୋଳୁଛନ୍ତି । ରଜା ତାଙ୍କୁ ସେ କାମରେ ଲଗାଇଛନ୍ତି । ସେଠାରେ ଶହ ଶହ କାରିଗର କାମ କରୁଛନ୍ତି । ଦିନରାତି କାମ ଚାଲିଛି । ଆଜକୁ ସାତ ବର୍ଷ ହେବ କାମ ହେଉଛି । ତୋର ଜନ୍ମ ଆଗରୁ ତୋ ବାପା ଗଲେଣି । ଆଜଯାଏ ଆସି ନାହାନ୍ତି । ଦେଉଳ ତୋଳା ସରିଲେ ଆସିବେ । ତୋ ବାପା ସେଠାରେ ବଡ଼ କାରିଗର । ତାଙ୍କର ଅଧୀନରେ ସବୁ କାରିଗର କାମ କରନ୍ତି । ତୁ ପାଠ ପଢ଼ । ଠାକୁରଙ୍କ ଦୟାରୁ ସେପରି କାରିଗର ହେଲେ, ବାପାଙ୍କ ପାଖକୁ ଯିବୁ ।"

ମାଆଙ୍କ କଥା ଶୁଣି କାରିଗର ବିଦ୍ୟା ଶିଖିବାକୁ 'ଧରମା'ର ମନ ହେଲା । ସେ ସେହି ଦିନଠାରୁ ପଥର କାମରେ ମନ ଦେଲା । ବାପାଙ୍କ ପାଖକୁ ଯିବାକଥା ବରାବର ମାଆଙ୍କୁ ପଚାରୁଥାଏ । ମାଆ ତା'ର ସବୁବେଳେ ତାକୁ କହନ୍ତି, "ତୁ ବଡ଼ ହୋଇ ଭଲ କାରିଗର ହୋଇଗଲେ ଯିବୁ ।" ଏହିପରି ଉତ୍ତର ପାଇ ଧରମା ଶିଳ୍ପ-ବିଦ୍ୟାରେ ଦିନକୁ ଦିନ ବେଶୀ ମନ ଦେଲା । ବଡ଼ କାରିଗରର ପୁଅ ସେ । ବାପର ଗୁଣ ତାଠାରେ ପୂରାମାତ୍ରାରେ ଅଛି । ସେ ପୁଣି କାରିଗର ନ ହୁଅନ୍ତା କପରି ? ଚାରି ପାଞ୍ଚ ବର୍ଷ ଭିତରେ ସେ ଜଣେ ବଡ଼ କାରିଗର ହୋଇଗଲା ।

ଧରମାକୁ ବାର ବର୍ଷ ହେଲେ ସେ ପୁଣି ବାପା ପାଖକୁ ଯିବାକୁ ବାହାରିଲା । ଏଥର ସେ ଯିବା ପାଇଁ ଜିଦ ଧରିଲା । ମା ଯେତେ ମନାକଲେ, ସେ ମାନିଲା ନାହିଁ । ତହୁଁ ତା'ର ମା' ବାଧ ହୋଇ ତା କଥାରେ ରାଜି ହେଲେ । ତାକୁ ପଠାଇବାବେଳେ

ତା ହାତରେ ଖଣ୍ଡିଏ ଚିଠି ଆଉ ନଜର ବାଡ଼ ବରକୋଳ ଗଣ୍ଡେ ଦେଲେ । ସେହି ଚିଠିରେ ଲେଖାଥିଲା :—

"ତୁମେ ତ ୧୨ ବର୍ଷ ହେଲା ଘରକୁ ଆସିଲ ନାହିଁ । ଏଣୁ ଘରେ ଯାହା ଘଟୁଛି, ତାହା କପରି ଜାଣିବ ? ସଂକ୍ଷେପରେ ଏ ପଦ ଲେଖିଲି । ଏଥିରୁ ସବୁ ବୁଝି ପାରିବ ।

ମା ସାଆନ୍ତାଣୀଙ୍କର କୁଳାଦେଈ ଓଷା,
ବୋହୂ ସାଆନ୍ତାଣୀଙ୍କର ଗଅଁଠ ଗଣ୍ଠିଆ ପାଟ,
ବଡ଼ହାଣ୍ଡି ହାନ୍ତୁଲାଣି, ସାନହାଣ୍ଡି ହାନ୍ତ ନାହିଁ ।"

ଚିଠିଟି ପଢ଼ି ବିଶୁ ମହାରଣା କାନ୍ଦି ପକାଇଲେ । ଅନ୍ୟ କାରି-ଗରମାନେ ଚିଠିରୁ ବୁଝିଲେ ଯେ, ବିଶୁ ମହାରଣା ଯେତେବେଳେ ରାଜମିସ୍ତ୍ରୀଙ୍କର ସରଦାର, ତାଙ୍କର ନିଶ୍ଚୟ ହାଣ୍ଡି ଥିବ ଏବଂ ତାଙ୍କ ସ୍ତ୍ରୀ ନିଶ୍ଚୟ ପାଟ ପିନ୍ଧୁଥିବେ । ମାତ୍ର ବିଶୁ ମହାରଣା ତାର ପ୍ରକୃତ ଅର୍ଥ ବୁଝିଥିଲେ । ସେ ପଦର ଅର୍ଥ ହେଉଛି—"ବାରବର୍ଷ ହେଲା ଘରକୁ ଟଙ୍କା ନ ପଠାଇବାରୁ ନିଜ ମା' ଖାଲିକୁଳା ଧରି ଉପବାସରେ ରହୁଛନ୍ତି ଏବଂ ସ୍ତ୍ରୀ ଛିଣ୍ଡା ଲୁଗାକୁ ଗଣ୍ଠି ପକାଇ ଯୋଡ଼ଯାଡ଼ ପିନ୍ଧୁଛି । ଘୁଣଖିଆ ଓ ମରାମତି ଅଭାବରୁ ବଡ଼ ଘରଟିର ରୁଅ, ବାଉଁଶ ସବୁ ବାହାରି ପଡ଼ିଲାଣି ଏବଂ ସାନ ଗୁଳି ଖଣ୍ଡିକରେ ଶୁଆମାରି ମା' ଓ ସ୍ତ୍ରୀ ଚଳୁଛନ୍ତି ।" ଘରେ ଏପରି ଅବସ୍ଥା, ଏଣେ ନିଜର ମୁଣ୍ଡକାଟ ହେବ, ଏହା ଭାବି ବିଶୁ କାନ୍ଦି ପକାଇଥିଲେ ।

'ରାତି ପାହିଲେ, ବାର ଶହ ବଢ଼େଇଙ୍କର ମୁଣ୍ଡକାଟ ହେବ' ଏକଥା ଧର୍ମପଦ ଶୁଣିପାରି ତାହାର କାରଣ ପଚାରିଲା । ମନ୍ଦିରଟିର ମୁଣ୍ଡି ମରା ହୋଇ ନ ପାରିବାରୁ ରାଜା ଏପରି ଆଦେଶ କରିଛନ୍ତି ବୋଲି ସେ ବୁଝିନେଲା । ତାପରେ ସଙ୍ଗେ ସଙ୍ଗେ ସେ ଧାଇଁଲା ମନ୍ଦିର ଆଡ଼େ । ମନ୍ଦିରର ଚୂଡ଼ା ଯେଉଁ ପାଖକୁ ଢଳି ପଡ଼ୁଥିଲା,

ସେହି ପାଖଟିକୁ ସେ ବହୁତ ନିରୀକ୍ଷଣ କରି କାରଣ ଅନୁସନ୍ଧାନ କଲା । ଧର୍ମପଦ ଦେଖିଲା ଯେ, ମନ୍ଦିରଠାରୁ ଅଳ୍ପ ଦୂରରେ ସେହି ପାଖକୁ ଖଣ୍ଡିଏ ଚୁମ୍ବକ ପଡ଼ିଅଛି । ତେଣୁ ଚୁମ୍ବକଟିକୁ ବହୁତ ଦୂରକୁ ନେଇ-ଯିବାକୁ ସେ ଆଦେଶ ଦେଲା । ମୂଲିଆମାନେ ସେଟିକୁ ସଙ୍ଗେ ସଙ୍ଗେ ନେଇଗଲେ । ଏହା ପରେ ଧର୍ମପଦ ସେହି ତିଆରି ମନ୍ଦିରରେ ଦଧିନଉତି କଳସ ଗର୍ବରେ ବସାଇଦେଲା ।

ମନ୍ଦିର ଉପରକୁ ବଡ଼ ବଡ଼ ପଥର ସବୁ ଉଠାଇବା ପାଇଁ ବହୁତ ଚୁମ୍ବକ ଅଣା ଯାଇଥିଲା । ଅସଂଖ୍ୟ ପଥର ଗଦା ଭିତରେ ସେଥି ମଧ୍ୟରୁ ଖଣ୍ଡେ କେଉଁଠି ଲୁଚି ରହିଥିଲା, ଏଥି ପ୍ରତି କାହାରି ଲକ୍ଷ୍ୟ ନ ଥିଲା । ସେହି ଚୁମ୍ବକ ଦ୍ୱାରା ମନ୍ଦିରର ଚୂଡ଼ା ଟାଣିହୋଇ ବଙ୍କା ହୋଇ ଯାଉଥିଲା । ଚୁମ୍ବକଟିକୁ ସେଠାରୁ ନେଇ ଦୂରରେ ଫିଙ୍ଗି ଦେବାରୁ ତାହା ଆଉ ବାଙ୍କିଲା ନାହିଁ । ମନ୍ଦିରର ମୁଣ୍ଡି ମିଳିଲା ।

ମିସ୍ତ୍ରୀମାନେ ଖୁସି ହେବାର କଥା । ମାତ୍ର ସେମାନେ ଆହୁରି ଦୁଃଖିତ ହେଲେ । ସମସ୍ତେ ବଡ଼ୁରକର ବିଶୁ ମହାରଣାଙ୍କୁ କହିଲେ, "କାଲି ତୁମ ପୁଅକୁ ଦେଖିଲେ, ରାଜା ନିଶ୍ଚୟ ଜାଣି ପାରିବେ ଯେ, ଏହି ବାଳକ ଦେଉଳର ମୁଣ୍ଡି ମାରିଛି । ଏଣୁ ବାଳକ ବଞ୍ଚି ରହିଲେ ଆମ ସମସ୍ତଙ୍କର ମୁଣ୍ଡ କଟା ହେବ । ଅତଏବ 'ତୁମର ପୁଅରେ ଦାୟ, ନା ବାରଶହ ଭାଇରେ ଦାୟ ?'

ବିଶୁ ମହାରଣା କନ୍ତୁ ପୁଅକୁ ମାରି, ବାର ଶହ ବଢ଼େଇଙ୍କୁ ବଞ୍ଚାଇବାକୁ ରାଜି ହୋଇ ପାରିଲେ ନାହିଁ । ଧର୍ମପଦ ମିସ୍ତ୍ରୀମାନଙ୍କର ବିକଳ ଭାବ ଦେଖି ଆଉ ଥୟଧରି ରହି ପାରିଲା ନାହିଁ । ସେ ଭାବିଲା, ମୋ ପ୍ରାଣ ବରଂ ଯାଉ, କିନ୍ତୁ ମୋ ଜାତି ବଞ୍ଚିରହୁ । ଏହା ସ୍ଥିର କରି ସେ ମନ୍ଦିର ଉପରୁ ସମୁଦ୍ରକୁ ଡେଇଁପଡ଼ି ପ୍ରାଣ ହରାଇଲା ।

—*—

# ଗୋ-ନାଶିକା ଓ ବ୍ରହ୍ମେଶ୍ୱର

କଟକ ଓ ବାଲେଶ୍ୱର ଜିଲ୍ଲା ସୀମାରେ ଯେଉଁ ନଦୀ ବହି-ଯାଉଛି, ତା'ର ନାମ ବୈତରଣୀ । ତାକୁ 'ଓଡ଼ିଶାର ଗଙ୍ଗା' ବୋଲି କୁହାଯାଏ । ବାସ୍ତବିକ୍ ତାହା ଗଙ୍ଗା । ସେହି ନଦୀର ଉତ୍ପତ୍ତି ବିଷୟରେ ଗୋଟିଏ କିମ୍ବଦନ୍ତୀ ଅଛି ।

ଥରେ ଶିବ ତପସ୍ୟା କରୁ କରୁ କାମଧେନୁ କପିଳା ତାଙ୍କର କୁଶ ବିଡ଼ାଟି ଖାଇଦେଲେ । ଶିବ ରାଗିଯାଇ କପିଳାଙ୍କୁ ଗୋଟିଏ ଚଟକଣା ମାରିଲେ । ଫଳରେ କପିଳାଙ୍କର ମୁଣ୍ଡ ଛିଡ଼ିଗଲା; ମାତ୍ର



ତାହା ଆଉ ଶିବଙ୍କ ହସ୍ତରୁ ଛାଡ଼ିଲା ନାହିଁ । ଶିବ ଏଥିପାଇଁ ବ୍ରହ୍ମାଙ୍କ ସହିତ ପରାମର୍ଶ କଲେ । ବ୍ରହ୍ମା କହିଲେ, "ତୁମକୁ ଗୋହତ୍ୟା ପାପ ଲାଗିଲା । ତୁମେ ସେହି ହାତଟିକୁ ଉପରକୁ ଟେକି ୧୨ବର୍ଷ ତପସ୍ୟା କର । ୧୨ ବର୍ଷ ପୂର୍ଣ୍ଣ ହେଲେ ତୁମର ତପୋବଳରେ ସେହି ଗୋରୁମୁଣ୍ଡର ନାଶିକାରୁ ଗଙ୍ଗା ବାହାରି ତୁମ ଉପରେ ପଡ଼ିବେ ।

ତେବେ ଯାଇ ତୁମର ଗୋ-ହତ୍ୟା ପାପ କ୍ଷୟ ହେବ ଏବଂ ହାତରୁ ମୁଣ୍ଡ ଖସିବ ।

ବ୍ରହ୍ମାଙ୍କ କଥା ମାନି ଶିବ ତପସ୍ୟା କଲେ । ବାର ବର୍ଷ ପୂର୍ଣ୍ଣ ହେଲା । ସେହି ଗୋ-ନାଶାରୁ ଗଙ୍ଗା ସ୍ରୋତ ବାହାରି ଶିବଙ୍କର ମୁଣ୍ଡରେ ପଡ଼ିଲା । ଶିବଙ୍କର ପାପସବୁ ଧୋଇ ହୋଇଯିବାରୁ ମୁଣ୍ଡଟି ହାତରୁ ଖସି ତଳେ ପଡ଼ିଲା । ମାତ୍ର ଗଙ୍ଗାଧାର ବନ୍ଦ ହେଲା ନାହିଁ; ସେହିପରି ବହିଲା । ଏହା ଆଜି ପର୍ଯ୍ୟନ୍ତ ମଧ୍ୟ ବହୁଅଛି ।

କେନ୍ଦୁଝର ଜିଲ୍ଲାର ଗୋ-ନାଶିକା ପର୍ବତର ଏକ ନିବିଡ଼ ଅରଣ୍ୟ ମଧ୍ୟରେ ଏହି ସ୍ଥାନଟି ଅବସ୍ଥିତ । ସେଠାରେ ପର୍ବତର ଗୋଟିଏ ଅଂଶ ଠିକ୍ ଗୋଟିଏ ଗୋରୁ ମୁଣ୍ଡ ପରି ହୋଇଛି । ତା'କୁ ଦେଖିଲେ ମନେହୁଏ, ସତେ ଯେପରି କେହି ଶିଳ୍ପୀ ପଥର କାଟି ସେହି ଗୋରୁ ମୁଣ୍ଡଟିକୁ ତିଆରି କରିଛି । ମାତ୍ର ସେ ଘଞ୍ଚ ଜଙ୍ଗଲ ମଧ୍ୟକୁ କୌଣସି ଶିଳ୍ପୀ ଯାଇ ଗୋରୁ ମୁଣ୍ଡଟିଏ ଆଙ୍କି ନାହାନ୍ତି । ମୁଣ୍ଡିକୁ ଦେଖିଲେ କିମ୍ବଦନ୍ତୀର ସତ୍ୟତା ଉପଲବ୍ଧି କରିହୁଏ ।

ଏହି ମୁଣ୍ଡରୁ. ନାକ ମଧ୍ୟ ଦେଇ ଗଙ୍ଗାଧାର ରୂପେ ଖ୍ୟାତ ଏକ ସରୁ ଝର ବାହାରିଛି । ଏହା ଏଠାରୁ ଏକ ମାଇଲ୍ ବହିବା ପରେ ଏକ ଅନାର୍ଯ୍ୟ ପଲ୍ଲୀରେ ପଡ଼ିଲା । ସେଠାରେ ସେହି ଅନାର୍ଯ୍ୟ-ମାନଙ୍କ ବଂଶଧର ଅଦ୍ୟାପି ବାସ କରନ୍ତି । ସେମାନେ ଜୁଆଙ୍ଗ ନାମରେ ପରିଚିତ । ଜୁଆଙ୍ଗମାନେ ଗୋ-ବଧ କରନ୍ତି ଓ ଗୋ-ମାଂସ ଭକ୍ଷଣ କରନ୍ତି । ଗୋରୁ ରକ୍ତରେ ସେ ଅଞ୍ଚଳର ମାଟି ଜୁଡ଼ୁବୁଡ଼ୁ । ଏଣୁ ସେ ସ୍ଥାନ ଅପବିତ୍ର । ସେଥିପାଇଁ ଗଙ୍ଗା ଆଉ ସେ ଅପବିତ୍ର ଅଞ୍ଚଳ ଦେଇ ସମୁଦ୍ର ପର୍ଯ୍ୟନ୍ତ ବହିଯିବାକୁ ରାଜି ହେଲେ ନାହିଁ । ଦୁଇ ପାଖରେ ଉଚ୍ଚ ପାହାଡ଼ଥାଏ । ଏଣୁ ଅନ୍ୟ ଉପାୟ ନ ଦେଖି ଗଙ୍ଗା ସେହିଠାରେ ପାତାଳଗାମିନୀ ହେଲେ ।

ଶିବଙ୍କର ପୁଣି ଚିନ୍ତା ହେଲା । ଗଙ୍ଗା ଯଦି ସମୁଦ୍ରରେ ପଡ଼ନ୍ତି, ତେବେ ଶିବଙ୍କର ଗୋ-ହତ୍ୟା ପାପ ଆଉ ସ୍ଥଳଭାଗରେ କୌଣସି ଅଞ୍ଚଳକୁ ଅପବିତ୍ର ନ କରି ସମୁଦ୍ରରେ ପଡ଼ିବ । ସମୁଦ୍ରଜଳ ମହାତୀର୍ଥ ହୋଇଥିବାରୁ ଏହା ତା'ସହିତ ମିଶି କ୍ଷୟ ହୋଇଯିବ । କିନ୍ତୁ ଗଙ୍ଗା ଯେ ଆଉ ଆଗକୁ ଯିବାକୁ ନାରାଜ । ସେ ଯେଉଁଠି ଅଟକିଲେ ଶିବଙ୍କର ପାପ ସେ ଅଞ୍ଚଳକୁ ଅପବିତ୍ର କଲା । ଶିବ ବଡ଼ ଅଡୁଆରେ ପଡ଼ିଲେ । ସେ ଏବେ କରନ୍ତି କ'ଣ ? ଶେଷରେ ପୁଣି ବ୍ରହ୍ମାଙ୍କୁ ଧ୍ୟାନକଲେ । ବ୍ରହ୍ମା ଆସି ଏ ଘଟଣା ବୁଝିଲେ । ତାପରେ ସେ ସେଠାରେ ଗୋଟିଏ ଯଜ୍ଞକରି ସେ ସ୍ଥାନଟିକୁ ପବିତ୍ର କରାଇଦେଲେ । ତାହାର ଚିହ୍ନ ସ୍ୱରୂପ ବ୍ରହ୍ମା ସେଠାରେ ବ୍ରହ୍ମେଶ୍ୱର ଲିଙ୍ଗଙ୍କୁ ସ୍ଥାପନ କରାଇଲେ । ଫଳରେ ସେ ସ୍ଥାନ ଏକ ପବିତ୍ର ତୀର୍ଥରେ ପରିଣତ ହେଲା । ତତ୍ପରେ ସେହି ଯଜ୍ଞକୁଣ୍ଡ ମଧ୍ୟରୁ ଗଙ୍ଗାଧାର ପୁଣି ବାହାରି ପୂର୍ବପରି ବହିବାକୁ ଲାଗିଲା । ଏହି କୁଣ୍ଡର ନାମ ବ୍ରହ୍ମେଶ୍ୱର କୁଣ୍ଡ ।

ଏହାପରେ ଗଙ୍ଗା ବ୍ରହ୍ମାଙ୍କୁ କହିଲେ, "ଏ ପଥ ଅପବିତ୍ର । ଏଣୁ ଆପଣ ଆଗେ ଆଗେ ଚାଲନ୍ତୁ । ଆପଣ ଆଗରେ ରହି ପଥ ପବିତ୍ର କରୁଥିବେ, ମୁଁ ଆପଣଙ୍କ ପଛରେ ଯିବି ।" ବ୍ରହ୍ମା ସେହି ପ୍ରସ୍ତାବରେ ରାଜି ହେଲେ । ସେ ଆଗେ ଆଗେ ଯାଇ ପ୍ରତି ୪।୬ ମାଇଲ ଦୂରରେ ଗୋଟିଏ ଲେଖାଏଁ ଯଜ୍ଞ କରନ୍ତି ଏବଂ ଗୋଟିଏ ଲେଖାଏଁ ଶିବଲିଙ୍ଗ ସ୍ଥାପନ କରନ୍ତି । ତାଙ୍କ ପଛେ ପଛେ ଗଙ୍ଗା ଚାଲିଥାନ୍ତି । ଏହିପରି ୧୧ଟି ଶିବଲିଙ୍ଗ ସ୍ଥାପନ ପରେ ବ୍ରହ୍ମା ସମୁଦ୍ରକୁ ଭେଟିଲେ । ସମୁଦ୍ର କୂଳରେ ଶେଷ ଶିବଲିଙ୍ଗଟି ସ୍ଥାପିତ ହେବା ପରେ ଗଙ୍ଗା ସମୁଦ୍ରରେ ମିଶିଗଲେ । ଏହି ଶେଷ ଶିବଲିଙ୍ଗ ହେଉଛନ୍ତି 'ଆଖଣ୍ଡଳମଣି' । ଏହି ଗଙ୍ଗା ହେଉଛନ୍ତି ବୈତରଣୀ ନଦୀ । ଏହାର କୂଳେ କୂଳେ ଆଜିପର୍ଯ୍ୟନ୍ତ ଦ୍ୱାଦଶ ଶମ୍ଭୁ ପୂଜା ପାଉଛନ୍ତି ।

—ঃ০✻০ঃ—

# ଚୋର ଠାକୁର

ଶ୍ରୀକୃଷ୍ଣ ଗୋପପୁରରେ କେତେ ଯେ ଦୁଧ, ଦହି ଓ ଲହୁଣି ଚୋରି କରିଥିଲେ, ସେକଥା ସମସ୍ତଙ୍କୁ ଅଳ୍ପ ବହୁତେ ଜଣାଥିବ । ସେହି ପ୍ରଭୁ ଏବେ ପୁଣି କିପରି ଭକ୍ତ ପାଇଁ ଚୋରି କରିଥିଲେ, ତାହା ଏଠାରେ ବର୍ଣ୍ଣିତ ହୋଇଅଛି ।

ଚିତ୍ରକୂଟରେ ଥାଇ ସୀତା ଦେବୀ ଦିନେ ଶ୍ରୀରାମଚନ୍ଦ୍ରଙ୍କୁ କହିଲେ "ପ୍ରଭୁ ! ଦ୍ୱାପର ଯୁଗରେ ଆପଣ ଗୋଟି ବାଳକ ରୂପରେ ଅନେକ ଲୀଳା କରିବେ ବୋଲି କହୁଥିଲେ । ସେତେବେଳକୁ ଆପଣଙ୍କର ରୂପ କିପରି ହେବ, ଟିକିଏ ଦୟା ପୂର୍ବକ ଅଙ୍କନ କରି ଦେଖାଇ-ଦେବେ କି ?" ସ୍ତ୍ରୀଙ୍କର ସସ୍ନେହ ଅନୁରୋଧ ଏଡ଼ି ନ ପାରି ରାମଚନ୍ଦ୍ର ଖଣ୍ଡିଏ ପଥର ଆଣି ତା ଉପରେ ନିଜର ଶର ସାହାଯ୍ୟରେ ଗୋଟିଏ ମୂର୍ତ୍ତି ଅଙ୍କନ କରିବାକୁ ଲାଗିଲେ । ମାତ୍ର ଆଶ୍ଚର୍ଯ୍ୟର କଥା, ମୂର୍ତ୍ତିଟି ଅଧା ଅଙ୍କିତ ହୋଇଛି, ଏତିକିବେଳେ ରାମଚନ୍ଦ୍ର ସେଟିକୁ ଆଉ ଟିକିଏ ଭଲ ଭାବରେ ପରିଷ୍କାର କରିବାକୁ ଯାଇ ଶର ଦ୍ୱାରା ଘର୍ଷି ଦେବାରୁ ସେଥିରୁ ରକ୍ତ ବୋହିଲା । ତହୁଁ ରାମଚନ୍ଦ୍ର ଜାଣି ପାରିଲେ ଯେ, ସେ ମୂର୍ତ୍ତିରେ ପ୍ରାଣ ସଞ୍ଚାର ହୋଇଗଲାଣି । ସେଥିରେ ଆଉ ଅସ୍ତ୍ର ପ୍ରୟୋଗ କଲେ ଦେବତାଙ୍କୁ କଷ୍ଟ ହେବ । ସେହି ମୂର୍ତ୍ତିଟିକୁ ସୀତା-ଦେବୀ ଦେଖି ମୁଗ୍ଧ ହୋଇଗଲେ । ରାମଚନ୍ଦ୍ର ସେହି ମୂର୍ତ୍ତିଟିର ନାମ 'ଗୋପୀନାଥ' ଦେଲେ ।

ସେହି ଦିନରୁ ଗୋପୀନାଥ ଚିତ୍ରକୂଟରେ ପୂଜା ପାଉଥିଲେ । ଏକଦା ଓଡ଼ିଶାର ଗଜପତି ରାଜା ଅନନ୍ତଦେବ ଚିତ୍ରକୂଟ ବୁଲି

ଯାଇଥିଲେ । ସେତେବେଳେ ଉକ୍ତ ଅଞ୍ଚଳକୁ ସେ ଯୌତୁକ ରୂପେ ପାଇଥାନ୍ତି । ଚନ୍ଦନକୂଠର ବନ ମଧ୍ୟରେ ରାଜା ବିଶ୍ରାମ କରୁ କରୁ ଶୋଇ ପଡ଼ିଲେ । ଗୋପୀନାଥ ତାଙ୍କୁ ସ୍ୱପ୍ନରେ କହିଲେ, "ରାଜା ! ମୋତେ ଏଠାରେ ରହିବାକୁ ଆଉ ଭଲ ଲାଗୁ ନାହିଁ । ତୁମେ ମୋତେ ନେଇ ରେମୁଣାରେ ପହଞ୍ଚାଇ ଦିଅ । ମୁଁ ସେଠାରେ ରହି କ୍ଷୀର ଖାଇବାକୁ ଚାହେଁ । ତପ୍ପରେ ଅନନ୍ତଦେବ ସେ ଠାକୁରଙ୍କୁ ସେଠାରୁ ଆଣି ରେମୁଣାରେ ରଖାଇଲେ ଏବଂ ପୂଜାର ବ୍ୟବସ୍ଥା ମଧ୍ୟ କରିଦେଲେ ।

ଏହି ରେମୁଣା ବାଲେଶ୍ୱର ଜିଲ୍ଲାର ଗୋଟିଏ ସ୍ଥାନ । ଏଠାରେ ସପ୍ତଶରା ବୋଲି ଗୋଟିଏ ନଦୀ ବହିଯାଉଅଛି । ରାମଚନ୍ଦ୍ର ବନବାସ କାଳରେ ଏହିଠାରେ ମଧ୍ୟ କିଛିଦିନ ରହିଥିଲେ । ସୀତା-ଦେବୀଙ୍କ ସ୍ନାନ ନିମିତ୍ତ ଜଳ ନ ମିଳିବାରୁ ରାମଚନ୍ଦ୍ର ସାତୋଟି ଶର ମାରି ଗୋଟିଏ ଝରଣା ସୃଷ୍ଟି କରିଥିଲେ । ସେହି ଝରଣାର ନାମ **ସପ୍ତଶରା** ।

ଥରେ ମାଧବେନ୍ଦ୍ର ପୁରି ନାମରେ ଜଣେ ଭକ୍ତ ନୀଳାଚଳ ଧାମକୁ ଯାତ୍ରା କରୁଥାନ୍ତି । ବାଟରେ ସନ୍ଧ୍ୟା ହୋଇଯିବାରୁ ସେ ରେମୁଣାର ଗୋଟିଏ ଡୋଠାରେ ବିଶ୍ରାମ କଲେ । ମନ୍ଦିର ପୂଜକଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ପୂଜକଙ୍କ ସହ କଥାବାର୍ତ୍ତା ହେଉ ହେଉ, ଗୋପୀନାଥ ଓ ତାଙ୍କର ମନ୍ଦିର ବିଷୟରେ ସେ ଅନେକ କଥା ଜାଣିପାରିଲେ । ଗୋପୀନାଥଙ୍କ ପାଖରେ ଅତି ବଢ଼ିଆ କ୍ଷୀର ଭୋଗ ହୁଏ ବୋଲି ଶୁଣି, ସେହି କ୍ଷୀର ଚାଖିବାକୁ ପୁରିଙ୍କର ଭାରି ଆଶା ହେଲା । ମାତ୍ର ସେ ନିଜର ମନକଥା ଲୁଚାଇ ରଖି ଚୁପ୍ ରହିଲେ । କଥାବାର୍ତ୍ତା ପରେ ପୂଜକ ଫେରିଗଲେ ।

ତେଣେ ମନ୍ଦିରରେ ସବୁଦିନ ପରି ଠାକୁରଙ୍କର ଭୋଗ ହେଲା । ସେବା ଶେଷରେ ବଡ଼ସିଂହାର ବେଶ ଓ ଧୂପ ସରିବା ପରେ,

ମନ୍ଦିରରେ ପହଡ଼ ପଡ଼ିଲା । ପଣ୍ଡା, ପୂଜାରୀମାନେ ଦେଉଳ ବନ୍ଦ କରି ନିଜ ନିଜ ଘରକୁ ଫେରିଗଲେ ।

ପୁରି ଗୋସେଇଁ ସିନା ମନକଥା ଲୁଚାଇ ରଖିଲେ । ମାତ୍ର ତାହା ଠାକୁରଙ୍କୁ ଅଜଣା ରହିଲା ନାହିଁ । ଭକ୍ତର ମନୋବାଞ୍ଛା କପରି ପୂରଣ କରିବେ, ଏହା ଠାକୁରଙ୍କର ଇଚ୍ଛା ହେଲା । ଯେତେବେଳେ ଠାକୁରଙ୍କ ପାଖରେ କ୍ଷୀର ଭୋଗ ଲାଗିଲା, ସେତେବେଳେ ଠାକୁର ନିଜେ ସେହି କ୍ଷୀର ପାତ୍ରମାନଙ୍କରୁ ଗୋଟିଏ ନିଜ ଲୁଗାତଳେ ଲୁଚାଇ ରଖିଥିଲେ । ଏହି ବିଷୟ ପଣ୍ଡାମାନେ ଅବା କାହୁଁ ଜାଣିବେ ! ସେମାନେ ଘରେ ଖାଇ ପିଇ ଶୋଇଲେ । ଠାକୁରଙ୍କ ମନ ତ ଭକ୍ତ ପାଖରେ, ତାଙ୍କୁ ନିଦ ହେଉଛି କେତେବେଳେ ? ଜଣେ ପଣ୍ଡାଙ୍କୁ ସେ ସ୍ୱପ୍ନରେ କହିଲେ, "ଉଠ, ମୋ ସିଂହାସନତଳେ ମୁଁ ଲୁଗା ଘୋଡ଼ାଇ ଗୋଟିଏ କ୍ଷୀର-ପାତ୍ର ଲୁଚାଇ ରଖିଛି । ନିକଟସ୍ଥ ତୋଟାରେ ଯେଉଁ ଭକ୍ତ ଶୋଇଛନ୍ତି, ତାଙ୍କୁ ଉକ୍ତ କ୍ଷୀର ଦେଇଆସ । ଭକ୍ତର ଆଶା ପୂର୍ଣ୍ଣ ନ କଲେ ମୋ ମନ ଶାନ୍ତି ପାଇବ ନାହିଁ । ମୋତେ ନିଦ ହେବ କୁଆଡ଼ୁ ? ଭକ୍ତର ନାମ ମାଧବେନ୍ଦ୍ର ପୁରି । ତାଙ୍କୁ ଏହି ନାମରେ ଡାକିଲେ ସେ ନିଶ୍ଚୟ ଶୁଣିବେ ।"

ଠାକୁରଙ୍କ ମୁଖରୁ ଏପରି କଥା ଶୁଣି ପଣ୍ଡା ଧଡ଼ପଡ଼ ହୋଇ ଉଠିଲେ । ସେତେବେଳକୁ ରାତି ବେଶୀ ହୋଇ ଯାଇଥାଏ । ତଥାପି ପଣ୍ଡା ଆଉ ଶୋଇ ନ ରହି ଶୀଘ୍ର ଆଲୁଅ ଲଗାଇଲେ ଏବଂ ସଙ୍ଗେ ସଙ୍ଗେ ମନ୍ଦିରକୁ ଗଲେ । ମନ୍ଦିରର ଦ୍ୱାର ଖୋଲି ଦେଖିଲେ, ଠାକୁରଙ୍କ ଲୁଗା ତଳେ କ୍ଷୀର ପାତ୍ରଟିଏ ଥୁଆ ହୋଇଛି । ପଣ୍ଡା ଭକ୍ତିରେ ଠାକୁରଙ୍କୁ ପ୍ରଣାମକରି ପାତ୍ରଟିକୁ ଆଣିଲେ । ନିକଟସ୍ଥ ତୋଟାକୁ ଯାଇ ସେ ଡାକିଲେ, "ଏଠାରେ ମାଧବେନ୍ଦ୍ର ପୁରି ନାମରେ କିଏ ଭକ୍ତ ଅଛ ? ଆସ, ତୁମ ପାଇଁ ଠାକୁର କ୍ଷୀର ଚୋରି,

କରି ରଖିଥିଲେ, ନିଅ ।" ଭକ୍ତ ମାଧବେନ୍ଦ୍ର, ପଣ୍ଡାଙ୍କ ଡାକ ଶୁଣି ଆସିଲେ ଏବଂ ଅତି ଆନନ୍ଦରେ ଠାକୁରଙ୍କର ପ୍ରସାଦ ସେବନ କଲେ । ସେହିଦିନଠାରୁ ସେ ଠାକୁରଙ୍କର ନାମ ହେଲା 'କ୍ଷୀରଚୋରା ଗୋପୀନାଥ' ।



ଠାକୁର ଭକ୍ତ ପାଇଁ ଚୋର କହିବାକୁ ସୁଦ୍ଧା କୁଣ୍ଠା ବୋଧ କରନ୍ତି ନାହିଁ ।

—୪୦୪—

# ଧଳା ବଳଦ କଳା ହେଲା

ସେତେବେଳେ ଧବଳେଶ୍ୱର ମହାଦେବଙ୍କ ମହିମା ଏତେ ବିଖ୍ୟାତ ହୋଇ ନ ଥାଏ । ଅଳ୍ପ କେତେ ଲୋକ ତାଙ୍କୁ ପୂଜା କରୁଥା'ନ୍ତି । ତାଙ୍କର ଜଣେ ଭକ୍ତର ଘର ମହାନଦୀ କୂଳରେ । ବର୍ଷେ ବନ୍ୟା ଯୋଗେ ଭକ୍ତଟିର ଫସଲ ଧୋଇଗଲା, ଘର ଭାଙ୍ଗିଗଲା, ବଳଦ ଦୁଇଟିରୁ ଗୋଟିଏ କେଉଁଆଡ଼େ ଭାସିଯାଇ ହଜିଗଲା । ଲୋକଟି ଅତି କାତର ହୋଇ କାନ୍ଦିବାକୁ ଲାଗିଲା । ଶେଷରେ ଅନ୍ୟ କିଛି ଉପାୟ ନ ପାଇ ସେ ଧବଳେଶ୍ୱରଙ୍କୁ ଧ୍ୟାନ କରି ନିଜ ଦୁଃଖ ଜଣାଇଲା । ସେଦିନ ଠାକୁର ତାକୁ ସ୍ୱପ୍ନରେ କହିଲେ, "ତୁ କାଲି ଆସି ମୋ ଗୋରୁ ଗୋଠରୁ ଗୋଟିଏ ବଳଦ ତୋ ରୁଚି ଅନୁସାରେ ବାନ୍ଧି ନେଇଯା' । ହଳ କରିବାକୁ ଆଉ ଅସୁବିଧା ହେବ ନାହିଁ ।"

ତହିଁ ପର ଦିନ ଲୋକଟି ଧବଳେଶ୍ୱରଙ୍କ ମନ୍ଦିର ଆଡ଼କୁ ଧାଇଁଲା । ଦେଖିଲା, ନଈ ପଠାରେ ବହୁତ ଗୋରୁ ଚରୁଛନ୍ତି । ସେଥିମଧ୍ୟରୁ ବାଛିକରି ଗୋଟିଏ ଭଲ ଧଳା ଦାମୁଡ଼ି ବାନ୍ଧି ସେ ଘରକୁ ଫେରିବାକୁ ଲାଗିଲା । ଅଳ୍ପବାଟ ଯାଇଛି, ଜଣେ ଲୋକ ପଛରୁ ଡାକି କହିଲା, "ହୋ ଭାଇ! ଆମ ବଳଦଟିକୁ କାହିଁକି ବାନ୍ଧି ନେଇ ଯାଉଅଛ ? ରହ, ରହ ।" ମାତ୍ର ଭକ୍ତଟି କିଛି ନ ଶୁଣି ଆଗକୁ ଚାଲିଥାଏ । ସେ ନ ଶୁଣିବାରୁ ଗୋରୁ ମାଲିକ ତା'ର ସାଙ୍ଗ ସୁଖି ଲୋକଙ୍କୁ ଏକଥା କହିଲା । ସଙ୍ଗେ ସଙ୍ଗେ ସମସ୍ତେ ଠେଙ୍ଗା ବାଡ଼ି ଧରି ଭକ୍ତ ପଛରେ ଦୌଡ଼ିଲେ । ଲୋକଟି ଭାବିଲା, ଠାକୁର ତ ମୋତେ ଯାଚିକରି ବଳଦ ଦେଲେ । ଏମାନେ ତେବେ କିଏ ? ବୋଧହୁଏ ଭକାପୂତ ହେବେ ! ମୋତେ ମାଡ଼ ଦେଇ ବଳଦ ଛଡ଼ାଇ ନେବାକୁ ଆସୁଅଛନ୍ତି ।

ଭକ୍ତ ଖୁବ୍ ଜୋରରେ ଦୌଡ଼ିଲା । ବଳଦଟି ଭାରି ଖରୁଆ; ଲାଞ୍ଜରେ ହାତ ଦେବାମାତ୍ରେ ସେ ଅତି ଜୋରରେ ଦୌଡ଼େ । ଏହିପରି ଦୌଡ଼ି ଭକ୍ତ ଧବଳେଶ୍ୱର ପଠା ପାଖରେ ପହଞ୍ଚିଲା ।



ସେଠାରେ ଟିକଏ ଠିଆ ହୋଇ ସେ ପଛକୁ ଚାହିଁ ଦେଖିଲା ଯେ, ଲୋକମାନେ ଆସି ତାହାର ଅତି ନିକଟ ହୋଇ ଗଲେଣି । ଏହା ଦେଖିପାରି ତା ମୁଣ୍ଡରୁ ନିଆଁ ଖସିବା ପରି ସେ ବୋଧକଲା । ହଠାତ୍ ବଳଦର ଲାଞ୍ଜରେ ହାତ ମାରି ତାକୁ ଗଙ୍ଗା ଭିତରକୁ ଡିଆଁଇ ପକାଇଲା ଏବଂ ନିଜେ ମଧ୍ୟ ପାଣିକୁ ଡେଇଁ ପଡ଼ିଲା । ଭକ୍ତ ପାଣିରେ ପହଁରି ଯାଇ ବଳଦର ଲାଞ୍ଜକୁ ଖୁବ ଜୋରରେ ଧରିଥାଏ । ଅଳ୍ପ ସମୟ ଭିତରେ ସେମାନେ ଗଙ୍ଗା ପାରି ହୋଇଗଲେ । ବଳଦକୁ ଧରି ଭକ୍ତ ଧବଳେଶ୍ୱରର ଅନ୍ୟପାଖ ପଠାକୁ ଉଠିଗଲା ।

ପଛରେ ଦୌଡ଼ୁଥିବା ଲୋକମାନେ ଆସି ପାଣି କୂଳରେ ଠିଆ ହୋଇ ରହିଲେ । ମାତ୍ର ପାଣିରେ ପଶିବାକୁ ସାହସ କଲେ ନାହିଁ ।

ଅନ୍ଧାର ହୋଇଯାଇ ଥିବାରୁ ଡଙ୍ଗା ମଧ୍ୟ ପାଇପାରିଲେ ନାହିଁ । ସେମାନେ ସେଠାରୁ ଫେରିଗଲେ ।

ଭକ୍ତଟି ଠାକୁରଙ୍କ ପାଖରେ ବଳଦକୁ ବାନ୍ଧିଦେଇ କହିଲା, "ପ୍ରଭୋ ! ତୁମ ଆଜ୍ଞାରେ ମୁଁ ବଳଦ ଆଣିଲି । ବର୍ତ୍ତମାନ ମୋ ପଛରେ ଶତ୍ରୁ ଗୋଡ଼ାଇଛନ୍ତି । ତୁମେ ରକ୍ଷାକର ।" ଏହିପରି ଜଣାଇ ରାତିଟି, ସେ ସେଠାରେ କଟାଇଲା । ରାତି ପାହିବା ବେଳକୁ ଦେଖାଗଲା, ଧବଳେଶ୍ୱର ମହାପ୍ରଭୁଙ୍କ କୃପାରୁ ବଳଦଟିର ରଙ୍ଗ କଳା ହୋଇଯାଇଛି । ସୂର୍ଯ୍ୟ ଉଦୟ ହେବା ମାତ୍ରେ ଲୋକ-ମାନେ ଡଙ୍ଗାରେ ଗଣ୍ଡ ପାରିହୋଇ ମହାଦେବଙ୍କ ପାଖରେ ପହଞ୍ଚିଲେ । ସେମାନେ ସେଠାରେ ଲୋକଟିକୁ ଦେଖି ତାକୁ ମାରିବାକୁ ଧାଇଁଲେ; ମାତ୍ର ବଳଦଟିକୁ ଦେଖିଲାକ୍ଷଣି ସେମାନେ ଆଶ୍ଚର୍ଯ୍ୟ ହୋଇ-ଗଲେ । ବଳଦ ମାଲିକ ଆଉ ବଳଦଟିକୁ ନିଜର ବୋଲି ଚିହ୍ନି ପାରିଲା ନାହିଁ । ତେଣୁ ଲଜ୍ଜିତ ହୋଇ ସମସ୍ତେ ଫେରିଗଲେ ।

ଭକ୍ତଟି କିନ୍ତୁ ସମସ୍ତ ରହସ୍ୟ ବୁଝି ପାରିଲା । ସେ ଜାଣିଲା ଯେ, ବଳଦଟି ସେହି ଲୋକର ଏବଂ ଧବଳେଶ୍ୱର ତାକୁ ରକ୍ଷା କରିବାକୁ ଏପରି କରିଅଛନ୍ତି । ତହୁଁ ସେ ବଳଦଟିକୁ ନେଇ ଓଡ଼ିଶାର ଗଜପତି ରାଜାଙ୍କ ପାଖରେ ପହଞ୍ଚିଲା ଏବଂ ତାଙ୍କୁ ସମସ୍ତ ଘଟଣା ଖୋଲି କହିଲା । ରାଜା ସମସ୍ତ କଥା ଶୁଣି ଭକ୍ତକୁ ବଳଦ ସହିତ ବିଦାୟ ଦେଲେ ଏବଂ ଯେଉଁ ଲୋକର ବଳଦ, ତାକୁ ଡାକି ତା'ର ଉଚିତ ମୂଲ୍ୟ ପ୍ରଦାନ କଲେ ।

ସେହିଦିନଠାରୁ ସେ ମହାଦେବଙ୍କର ନାମ ଧବଳେଶ୍ୱର ହେଲା । ଠାକୁରଙ୍କ ମହିମା ଚାରିଆଡ଼େ ବିଖ୍ୟାତ ହେଲା ଓ ରାଜା ଧବଳେଶ୍ୱରଙ୍କର ମନ୍ଦିର ତୋଳାଇଦେଲେ । ଏହି ଧବଳେଶ୍ୱର ମନ୍ଦିର କଟକ ସହରର ଠିକ୍ ପଶ୍ଚିମରେ ଏବଂ ମହାନଦୀ ମଧ୍ୟସ୍ଥ

ଗୋଟିଏ ପଠାରେ ଅବସ୍ଥିତ । ପ୍ରତିବର୍ଷ କାର୍ତ୍ତିକ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ ଏହି ଧବଳେଶ୍ୱରଙ୍କ ଉଦ୍ଦେଶ୍ୟରେ ନିଉଦା ସାରି 'ବଡ଼ଓଷା' ପାଳିତ ହୁଏ । ସେଦିନ ଧବଳେଶ୍ୱରଙ୍କ ପାଖରେ ବହୁ ଯାତ୍ରୀ ରୁଣ୍ଡ ହୋଇଥାଆନ୍ତି ।

---

# ଆଦର୍ଶ ପ୍ରଶ୍ନାବଳୀ

ଶ୍ରୀମନ୍ଦିର :—

୧ । ବିଦ୍ୟାପତି, ନୀଳମାଧବଙ୍କର ସନ୍ଧାନ କିପରି ପାଇଲେ ?

୨ । ଶ୍ରୀଜଗନ୍ନାଥଙ୍କର ଦାରୁମୂର୍ତ୍ତି କିପରି ହେଲା ?

୩ । କାଉଟି ବିଷ୍ଣୁକୂପରେ ଗାଧୋଇ, ଇନ୍ଦ୍ରଦ୍ୟୁମ୍ନଙ୍କୁ ଯାହା କହିଥିଲା, ସଂକ୍ଷେପରେ ବର୍ଣ୍ଣନା କର ।

୪ । ପଣ୍ଡାଙ୍କର ଇନ୍ଦ୍ରଙ୍କ ସହିତ କି କଥୋପକଥନ ହୋଇଥିଲା ?

୫ । ଠାକୁରଙ୍କ ମୁଣ୍ଡରେ ବାଳ ହେଲା କାହିଁକି ?

୬ । ଶ୍ରୀଜଗନ୍ନାଥ ଯୁଦ୍ଧକୁ ଯାଇଥିଲେ ବୋଲି ରାଜା ପୁରୁଷୋତ୍ତମ-ଦେବ କିପରି ଜାଣିଲେ ?

୭ । ସଂକ୍ଷିପ୍ତ ଟିପ୍ପଣୀ ଦିଅ :—

ବାଇଶି ପାହାଚ, ନୀଳଚକ୍ର, ନୀଳାଚଳ, ବଡ଼ଦାଣ୍ଡ, ମାଣିକ ପାଟଣା, ଦଇତାପତି ବଂଶ, ବିଷ୍ଣୁକୂପ, ତୀର୍ଥକାକ ଓ ମେଘମାଳିଆ ପିଠା ।

ଶାରଳା ମନ୍ଦିର :—

୧ । ପର୍ଶୁରାମ କିପରି ସ୍ୱପ୍ନରେ ଦେବୀଙ୍କ ଦର୍ଶନ ପାଇଲେ ?

୨ । ସିଦ୍ଧେଶ୍ୱର ପରିଡ଼ା କାହିଁକି ପୋଥି ଲେଖିଲେ ?

୩ । କାହ୍ନୁ କିପରି ଘୋଡ଼ାର କାର୍ଯ୍ୟ କଲା ?

୪ । "ବାଘ ଅଛୁ ବୋଲି ଜାଣଇ ନାହିଁ" ଏହା କିଏ ଏବଂ କାହିଁକି କହିଥିଲେ ?

୫ । ଭେଟିବର, ଲଣ୍ଡା ଦେଉଳ, ଝଙ୍କଡ଼, ମୁଣ୍ଡଠେଙ୍ଗା ବର, ଏଗୁଡ଼ିକ ବିଷୟରେ ଯାହା ଜାଣ ବର୍ଣ୍ଣନା କର ।

କୋଣାର୍କ ମନ୍ଦିର :—

୧ । କୋଣାର୍କ, ସୂର୍ଯ୍ୟ ପୂଜା ପାଇଁ ଉପଯୁକ୍ତ ସ୍ଥାନ ବୋଲି କପରି ପ୍ରସିଦ୍ଧି ଲାଭ କଲା ?

୨ । କୋଣାର୍କ ମନ୍ଦିରକୁ 'କଳା ମନ୍ଦିର' କୁହାଗଲେ ଠିକ୍ ହୁଅନ୍ତା, କାହିଁକି ?

୩ । ଦେଉଳ ମୁଳଦୁଆ ପଡ଼ିବା ବିଷୟରେ ଶିବେଇ ସାମନ୍ତରାୟଙ୍କ ଭ୍ରମ କିଏ କପରି ଦୂର କଲା ?

୪ । ବିଶୁ ମହାରଣା ଧର୍ମପଦକୁ କପରି ଚିହ୍ନି ପାରିଲେ ?

୫ । ଧର୍ମପଦ ଯେଉଁ ଶଠି ଆଣିଥିଲା, ତାର ପ୍ରକୃତ ଅର୍ଥ କ'ଣ ?

୬ । ଧର୍ମପଦ କି ଉପାୟରେ ମନ୍ଦିରର ଚୂଳ ବସାଇଲା ?

୭ । ଶୂନ୍ୟସ୍ଥାନ ପୂରଣ କର :—

ଧର୍ମପଦ — ମହାରଣାଙ୍କ ପୁଅ । ତା'ର ଶ୍ରଦ୍ଧାନାମ — । ସେ — ମନ୍ଦିରର — ବସାଇଥିଲା । ବାର ଶହ ବଢ଼େଇଙ୍କ — ରକ୍ଷା ପାଇଁ ସେ ମନ୍ଦିର ଉପରୁ — କୁ ଡେଇଁପଡ଼ିଲା ।

ଗୋନାଶିକା ଓ ବ୍ରହ୍ମେଶ୍ୱର :—

ଗୋହତ୍ୟା ପାପରୁ ଶିବ କପରି ମୁକ୍ତି ଲାଭ କଲେ ?

ସ୍ୱେର ଠାକୁର :—

୧ । ଏହି ଠାକୁରଙ୍କ ମୂର୍ତ୍ତି କିଏ ଏବଂ କାହିଁକି ନିର୍ମାଣ କଲେ ?

୨ । ସେହି ମୂର୍ତ୍ତି ଓଡ଼ିଶାକୁ କପରି ଆସିଲା ?

୩ । ଭକ୍ତ ପାଇଁ ଠାକୁର କପରି ସ୍ୱେରି କରିଥିଲେ ?

ଧଳା ବଳଦ କଳା ହେଲା :—

ମହାଦେବଙ୍କର ନାମ ଏପରି କାହିଁକି ହେଲା ?

